# ଅମର ଚରିତ



ଶ୍ରୀରାମଚନ୍ଦ୍ରଭଞ୍ଜ

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋରସ୍ ଲିଃ

# ଶ୍ରୀରାମଚନ୍ଦ୍ର ଭଞ୍ଜ

ଲେଖକ
ଶ୍ରୀ ଗୋଦାବରୀଶ ମହାପାତ୍ର

ପ୍ରକାଶକ
ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋରସ୍ ଲି:

# ମୟୂରଭଞ୍ଜ ରାଜ୍ୟ

ଓଡ଼ିଶାର ପୂର୍ବ ଗଡ଼ଜାତ ରାଜ୍ୟ ମଧ୍ୟରେ ମୟୂରଭଞ୍ଜ ସବୁଠାରୁ ବଡ଼ ଓ ପ୍ରଧାନ ରାଜ୍ୟ ଥିଲା । ମୟୂରଭଞ୍ଜର ରାଜାମାନେ ଦିନେ ଉତ୍କଳର ବିଜୟ ପତାକା ଉଡ଼ାଇ ଦେଶ ବିଦେଶ ଜୟ କରିଥିଲେ । ପ୍ରାଚୀନ ତାମ୍ରଲିପ୍ତ ରାଜ୍ୟ ଦିନେ ଏହି ରାଜ୍ୟର ଅଧୀନରେ ଥିଲା । ଏବେ ସେ ଯୁଗ ଆଉ ନାହିଁ । ଗଡ଼ଜାତ ସବୁ ଓଡ଼ିଶା ପ୍ରଦେଶରେ ମିଶିଗଲା ପରେ ମୟୂରଭଞ୍ଜ ଗୋଟିଏ ଜିଲାରେ ପରିଣତ ହୋଇଛି ।

ପ୍ରକୃତିର ଶୋଭାସମ୍ପଦରେ ମୟୂରଭଞ୍ଜ ଅତୁଳନୀୟ । କେଉଁଠି ଶ୍ୟାମଳ ପର୍ବତମାଳ, କେଉଁଠି ଭୟଙ୍କର ଅରଣ୍ୟ, କେଉଁଠି ନଦୀ, କେଉଁଠି ଶୀତଳ ଝରଣା ନାନା ବିଚିତ୍ର ଲୀଳା ଦେଖାଇ ରହିଅଛନ୍ତି । ଏଠାରେ ଏପରି ସ୍ଥାନ ଅଛି, ଏ ପାଖେ ସୂର୍ଯ୍ୟ ଥିଲେ, ସେ ପାଖେ ଖରା ପଡ଼ି ନ ଥିବ । ମଝିରେ ଆକାଶଭେଦୀ ପର୍ବତମାଳା । ପ୍ରକୃତିର ସେ ଖେଳ ଦେଖିଲେ ମନ ପ୍ରାଣ ଆନନ୍ଦରେ ନାଚି ଉଠିବ । କେଉଁଠି ଭୟଙ୍କର ଅରଣ୍ୟ ଭିତରେ କେଉଁ ଆଦିଯୁଗରୁ ଝରଣାଟିଏ ବହି ଯାଉଛି; ସୂର୍ଯ୍ୟକିରଣ ସେ ଭିତର ଛୁଇଁ ପାରି ନାହିଁ । ଏହି ପାହାଡ଼ ଜଙ୍ଗଲ ଭିତରେ ନାନା ଅମୂଲ୍ୟ ଖଣି ଅଛି, ନାନା ରକମର ଭୀଷଣ ହିଂସ୍ର ଜନ୍ତୁ ପୁଣି ରହିଛନ୍ତି ଏବଂ ତାହା ମଧ୍ୟରେ ମନୁଷ୍ୟ ମଧ୍ୟ ଘର ଦ୍ୱାର

ଢୋଳ ରହିଛି । ଏ କଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ମାତ୍ର କଥାଟି ସତ । ମୟୂରଭଞ୍ଜର ଶତକେ ସତୁରୀ ଜଣ ହେଉଛନ୍ତି ଆଦିବାସୀ କନ୍ଧ, କୋହ୍ଲ, ସାନ୍ତାଳ ଜାତିର ଲୋକ । ସେମାନେ ଜଙ୍ଗଲରେ ରହନ୍ତି; ଜଙ୍ଗଲ ସେମାନଙ୍କର ଘର ଦ୍ୱାର । ବାଘ ଭାଲୁକୁ ସେମାନଙ୍କର ଭୟ ନ ଥାଏ; ଖରା ବର୍ଷା ଶୀତକୁ ସେମାନଙ୍କର ଖାତିର ନ ଥାଏ ।

ଏହି ବିଚିତ୍ର ଅଞ୍ଚଳରେ ପର୍ବତମାଳା ମୁଣ୍ଡ ଟେକି ଠିଆ ହୋଇଛନ୍ତି; ତା' ଭିତରୁ ମନୁଷ୍ୟ ନାନା କୌଶଳରେ ଲୁହା, ଅଭ୍ର ପ୍ରଭୃତି ଜିନିଷ କାଢ଼ି ଆଣୁଛି । କେଉଁ ଯୁଗରୁ ବଣରାଜ୍ୟ ଅକ୍ଷୁଣ୍ଣ ଭାବରେ ପଡ଼ିଛି, ମନୁଷ୍ୟ ତା ଭିତରେ ପଶି ନିଜ ପାଇଁ କେତେ ଅମୂଲ୍ୟ ଜିନିଷ ସଂଗ୍ରହ କରି ନେଉଛି ।

ମୟୂରଭଞ୍ଜ ଏହିପରି ଏକ ବିଚିତ୍ର ଅଞ୍ଚଳ । ଏହାର ଉତ୍ତର ଦିଗରେ ମେଦିନୀପୁର ଓ ସିଂହଭୂମି ଜିଲ୍ଲା, ପୂର୍ବରେ ମେଦିନୀପୁର ଓ ବାଲେଶ୍ୱର ଜିଲ୍ଲା, ଦକ୍ଷିଣରେ ବାଲେଶ୍ୱର ଓ ନୀଳଗିରି । ପଶ୍ଚିମ ଦିଗକୁ କେନ୍ଦୁଝର ଓ ସିଂହଭୂମି ଘେରି ରହିଛି ।

## ପୂର୍ବ ପୁରୁଷ

ମୟୂରଭଞ୍ଜର ରାଜବଂଶ ଅତି ପ୍ରାଚୀନ । ଏହି ରାଜବଂଶର ପୂର୍ବପୁରୁଷମାନଙ୍କ ସମ୍ବନ୍ଧରେ ଅନେକ ଆଶ୍ଚର୍ଯ୍ୟଜନକ କାହାଣୀ ଶୁଣାଯାଏ । କଥା ଅଛି ଯେ, ଏହି ବଂଶର ଆଦିପୁରୁଷ ଆଦିଭଞ୍ଜଙ୍କୁ ବଶିଷ୍ଠ ମହର୍ଷି ନେଇ ତାଙ୍କ ଆଶ୍ରମରେ ପାଳିଥିଲେ । ଋଷିଙ୍କ ଆଶୀର୍ବାଦରୁ ସେ ବଳୀୟାନ୍ ହୋଇ ଏହି ରାଜ୍ୟରେ ରାଜା ହେଲେ । ଏକ ସମୟରେ ମୟୂରଭଞ୍ଜର ରାଜଧାନୀ ଖିଚିଙ୍ଗ ବୋଲି ଏକ ସ୍ଥାନରେ ଥିବାର ଅନୁମାନ କରାଯାଏ । ଏବେ ଏହି ଖିଚିଙ୍ଗ ଠାରୁ ବହୁ ପୁରାତନ ଯୁଗର ପଥର ମୂର୍ତ୍ତି ଓ ଗଡ଼ର ଚିହ୍ନ ମିଳୁଛି ।

ଆଦି ଭଞ୍ଜଙ୍କର ଆଉ ଗୋଟିଏ ନାଁ ବୀରଭଦ୍ର ଭଞ୍ଜ । କୋଟ ଭଞ୍ଜ ବୀରଭଦ୍ର ଭଞ୍ଜଙ୍କ ପୁଅ । ଏହି କୋଟ ଭଞ୍ଜ ମହା-ପରାକ୍ରମଶାଳୀ ଥିଲେ । ତାଙ୍କ ପୁଅ ଦିଗ ଭଞ୍ଜଙ୍କ ମହିମା ଜଙ୍ଗଲର ଚତୁର୍ଦ୍ଦିଗରେ ବ୍ୟାପିଥିଲା । ଅତି ପ୍ରାଚୀନ କାଳରେ ମଧ୍ୟ ମୟୂର-ଭଞ୍ଜ ରାଜବଂଶର ଖ୍ୟାତି ଦେଶତମାମ୍ ବ୍ୟାପି ରହିଥିଲା ।

କାହା କାହା ମତରେ ଏହି ରାଜବଂଶ ରାଜପୁତନାର ମିବାର ସୂର୍ଯ୍ୟବଂଶର ଗୋଟିଏ ଶାଖା । ସେ ଯାହାହେଉ, ମୟୂରଭଞ୍ଜର ରାଜବଂଶ ଯେ ଦିନେ ଓଡ଼ିଶାର ଗଡ଼ଜାତ ମହଲରେ ମୁକୁଟମଣି ପରି ଥିଲା, ଏଥିରେ କିଛି ସନ୍ଦେହ ନାହିଁ ।

ଏ ରାଜ୍ୟର ଶହ ଶହ ବର୍ଷ ତଳର ଇତିହାସ କିଛି ଲେଖା ନାହିଁ । କଥା ଅଛି, ଆଜକୁ ପ୍ରାୟ ତେରଶହ ବର୍ଷ ତଳେ ରାଜ-ପୁତନା ଜୟପୁର ରାଜ୍ୟର ଜଣେ ରାଜା ଥରେ ପୁରୀ ଜଗନ୍ନାଥ ଦର୍ଶନକୁ ଆସିଥିଲେ । ଅନେକଦିନ ତାଙ୍କର ପୁରୀରେ ରହଣି ହେଲା । ସେହି ସମୟରେ ଥିବା ପୁରୀ ରାଜାଙ୍କ ସହିତ ତାଙ୍କର ବନ୍ଧୁତା ବଢ଼ିଲା । ସେ ପୁରୀ ରାଜାଙ୍କ କନ୍ୟାକୁ ବିଭା ହେଲେ । ସେତେବେଳେ ମୟୂରଭଞ୍ଜ ରାଜ୍ୟର ଏକ ପ୍ରଧାନ ଅଂଶକୁ ହରିହରପୁର କୁହାଯାଉଥିଲା । ପୁରୀରାଜା ଝିଅକୁ ବିଭା ଦେଇ ଏହି ହରିହରପୁର ରାଜ୍ୟ ଜୋଇଁଙ୍କୁ ଯଉତୁକ ଦେଲେ ।

ଏଣେ ସେହି ସମୟରେ ମୟୂରଭଞ୍ଜର ଆଜିକାଲିର ବାମନ-ଘାଟି ଅଞ୍ଚଳରେ ଜଣେ ଖାଣ୍ଡୁଆ ରଜା ରାଜୁତି କରୁଥାନ୍ତି । ତାଙ୍କ ନାଁ ହେଉଛି ମୟୂରଧ୍ୱଜ । ଜୟପୁର ରାଜାଙ୍କ ସହିତ ମୟୂରଧ୍ୱଜ-ଙ୍କର ଯୁଦ୍ଧ ହେଲା । ଶେଷରେ ମୟୂରଧ୍ୱଜ ହାରି ପଳାଇଲେ ।

ଜୟପୁର ରାଜାଙ୍କ ନାଁ ଜୟସିଂହ । ଶତ୍ରୁର ଗର୍ବଭଞ୍ଜନ କରି ସେ ରାଜ୍ୟ ଜିଣିବାରୁ ସେହିଦିନୁ ତାଙ୍କ ନାଁ ହେଲା ଜୟ ଭଞ୍ଜ ।

ଏହି ଭଞ୍ଜ ଉପାଧି ସେହି କାଳରୁ ରାଜବଂଶରେ ଚାଲି ଆସିଲା । ଜୟପୁର ରାଜମୁକୁଟରେ ମୟୂର ଛବି ଶୋଭା ପାଉଥିବାରୁ ଏବଂ ମୟୂର ପକ୍ଷୀକୁ ସେମାନେ ପବିତ୍ର ଜୀବ ବୋଲି ମନେ କରୁଥିବାରୁ ସେହି ଭକ୍ତିରେ ସେ ରାଜ୍ୟର ନାଁ ଦେଲେ ମୟୂରଭଞ୍ଜ ।

## ମହାରାଜା କୃଷ୍ଣଚନ୍ଦ୍ର

ଭାରତରେ ପଠାଣ ଓ ମୋଗଲମାନେ ଜୟପତାକା ଉଡ଼ାଉଥିଲା ବେଳେ ଓଡ଼ିଶା ସ୍ୱାଧୀନ ଥିଲା । ସେତେବେଳେ ମୟୂରଭଞ୍ଜର ରାଜବଂଶ ଓଡ଼ିଶାରେ ବଡ଼ ଶକ୍ତିଶାଳୀ ଥିଲେ । ଗଜପତି ବଂଶର ଅବନତି ପରେ ଓଡ଼ିଶା ଯେତେବେଳେ ମରହଟ୍ଟାମାନଙ୍କ ହାତକୁ ଗଲା, ସେତେବେଳେ ମରହଟ୍ଟାମାନଙ୍କ ପ୍ରଭାବ ମଧ୍ୟ ଭଞ୍ଜ ରାଜ୍ୟ ଉପରେ ପଡ଼ିଲା । ତା ପରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଓଡ଼ିଶାର ଗଡ଼ଜାତ ସବୁ ସରକାରଙ୍କ କରଦରାଜ୍ୟ ହୋଇ ରହିଲା ।

ଇଂରେଜମାନେ ଓଡ଼ିଶା ରାଜ୍ୟ ଅଧିକାର କରିବାର ସାତ ବର୍ଷ ପରେ ୧୮୧୨ ମସିହାରେ ମୟୂରଭଞ୍ଜର ସେତେବେଳର ରାଜା ତ୍ରିବିକ୍ରମ ଭଞ୍ଜ ଇଷ୍ଟ ଇଣ୍ଡିଆ କମ୍ପାନି ସଙ୍ଗେ ଏକ ସନ୍ଧି କଲେ । ସେହି ସନ୍ଧି ଫଳରେ ସରକାର ମୟୂରଭଞ୍ଜରୁ ବର୍ଷକୁ ଶହେ ଏକ ଟଙ୍କା କର ନେବା ଠିକ୍ ହେଲା । ତ୍ରିବିକ୍ରମଙ୍କ ପୁଅ ଯଦୁନାଥ ଭଞ୍ଜଙ୍କ ସମୟରେ ୧୮୨୨ ମସିହାରେ ଥରେ ପ୍ରଜାମେଳି ହୋଇଥିଲା । ତାଙ୍କ ପୁଅ ଶ୍ରୀନାଥ ଭଞ୍ଜ ଅପୁତ୍ରିକ ଥିଲେ । ତେଣୁ ଶ୍ରୀନାଥଙ୍କ ଅନ୍ତେ ୧୮୬୮ ମସିହାରେ ତାଙ୍କ ଭାଇଙ୍କ ପୁଅ କୃଷ୍ଣଚନ୍ଦ୍ର ରାଜଦଣ୍ଡ ଧରିଲେ ।

ଏହିଠାରୁ ମୟୂରଭଞ୍ଜରେ ନବଯୁଗ ଆରମ୍ଭ ହେଲା କହିଲେ ଚଳେ । କୃଷ୍ଣଚନ୍ଦ୍ର ବଡ଼ ଶକ୍ତିଶାଳୀ ସାହସୀ ରାଜା ଥିଲେ । ସେ ସିଂହାସନରେ ବସିଲା ବେଳକୁ ରାଜ୍ୟରେ ନାନା ଅଶାନ୍ତି ଦୂର ରହିଥିଲା । ଶାସନଶୃଙ୍ଖଳା କିଛି ନ ଥିଲା । ରାଜଦ୍ୱାରରେ ପ୍ରଜାଙ୍କର ହାରଗୁହାରି ବୁଝିବାପାଇଁ ଯେପରି କିଛି ଧରାବନ୍ଧା ଆଇନକାନୁନ ନ ଥିଲା । ରାଜ୍ୟର ବଡ଼ ବଡ଼ କର୍ମଚାରୀମାନେ ମୁହେଁ ମୁହେଁ ହୁକୁମ ଜାରି କରି ପ୍ରଜାଙ୍କୁ ଜବତ କରି ରଖିଥିଲେ । ପ୍ରଜା ଦୋଷ କଲେ ତାଙ୍କୁ ଦଣ୍ଡ ସ୍ୱରୂପ ଜେଲ ଦିଆ ଯାଉଥିଲା ସତ; ମାତ୍ର ଜେଲ-ଖାନାରୁ କଏଦୀମାନେ କାଳେ କୁଆଡ଼େ ଡେଇଁ ଚାଲିଯିବେ ବୋଲି ଗୋଟିଏ ଗୋଟିଏ ଖୁଣ୍ଟିରେ ଜଣ ଜଣକୁ ବାନ୍ଧି ରଖାଯାଉଥିଲା । ପ୍ରଜାଙ୍କର ଜମିଜମା ମାପଚୁପ ନହୋଇ ଖଜଣା ଆଦାୟ କରାଯାଉଥିଲା ।

ମୟୂରଭଞ୍ଜର ଯେତେବେଳେ ଏହିପରି ଅବସ୍ଥା, କୃଷ୍ଣଚନ୍ଦ୍ର ଆସି ଗାଦିରେ ବସିଲେ । ସେ ପୋଷିଆ ପୁଅ ହୋଇଥିବାରୁ ପୂର୍ବ ରାଜାଙ୍କ ବିଧବା ରାଣୀ ତାଙ୍କୁ ସୁଖ ପାଉ ନ ଥିଲେ । ତାଙ୍କୁ ଗାଦିରୁ ତଡ଼ିବା ପାଇଁ ନାନା ଉପାୟ ଚାଲିଲା । ପ୍ରଜାମାନେ ଠାଏ ଠାଏ ମେଳି ବାନ୍ଧିଲେ । ମାତ୍ର ତାଙ୍କର ବିଚିତ୍ର କାର୍ଯ୍ୟ କୌଶଳରେ ସକଳ ବିପଦ କୁଆଡ଼େ ପାଣିଫୋଟକା ପରି ଉଭେଇ ଗଲା । କୃଷ୍ଣଚନ୍ଦ୍ର ଯେତେବେଳେ ପ୍ରଜାଙ୍କ ଉପକାର ପାଇଁ ଦିନରାତି ଲାଗିଲେ, ଲୋକେ ମଧ୍ୟ ସେହିପରି ତାଙ୍କୁ ନିଜର ପିତା ପରି, ଗୁରୁଦେବ ପରି ଭକ୍ତି କଲେ । ଶେଷରେ ତାଙ୍କ ଗୁଣରେ ଖୁସି ହୋଇ ବିଧବା ରାଣୀ ମଧ୍ୟ ତାଙ୍କୁ ନିଜର ପୁଅପରି ଦେଖିଲେ ।

କୃଷ୍ଣଚନ୍ଦ୍ର ରାଜ୍ୟ ଭିତରେ ନାନା ସଂସ୍କାର ଆରମ୍ଭ କଲେ । ଜମି ସବୁ ଜରିପ କରାଗଲା । ସ୍ଥାନେ ସ୍ଥାନେ ସ୍କୁଲ ବସିଲା

ରାଜ୍ୟକୁ ପ୍ରଗଣା ପ୍ରଗଣା କରି ସେଥିରେ କର୍ମଚାରୀ ରଖାଗଲା । ଲୋକଙ୍କ ହାରଗୁହାରି ବୁଝିବା ପାଇଁ କଚେରୀ ବସିଲା । ସୁବିଧା ଭାବରେ ଖଜଣା ଆଦାୟ ପାଇଁ କେତେକ ବନ୍ଦୋବସ୍ତ ହେଲା । ଆଜିକାଲି ରାଜଧାନୀ ବାରିପଦାରେ ଯେଉଁ ସ୍କୁଲ ଅଛି, ରାଜା କୃଷ୍ଣଚନ୍ଦ୍ର ପ୍ରଥମେ ସେଇଠାରେ ମାଇନର ସ୍କୁଲ ପ୍ରତିଷ୍ଠା କରିଥିଲେ ।

ସେହି ସମୟରେ ଓଡ଼ିଶାରେ ରେଭେନ୍‌ସା ସାହେବ କମିଶନର ଥାନ୍ତି । ରାଜା କୃଷ୍ଣଚନ୍ଦ୍ରଙ୍କୁ ସେ ଭଲ ପାଉଥାନ୍ତି । ତାଙ୍କର ପରାମର୍ଶ ଅନୁସାରେ କୃଷ୍ଣଚନ୍ଦ୍ର ସେତେବେଳର କଟକ ଇଂଲିଶ୍ ସ୍କୁଲକୁ ଏକାଠି ସତେଇଶ ହଜାର ଟଙ୍କା ଦାନ କରିଥିଲେ । ଏହି ଟଙ୍କା ଯୋଗୁଁ ସ୍କୁଲଟି କଲେଜରେ ପରିଣତ ହେଲା ।

କୃଷ୍ଣଚନ୍ଦ୍ରଙ୍କ ଉଦାର ଗୁଣ, ଦାନଧର୍ମ ଏବଂ ରାଜ୍ୟରେ ସୁଶାସନ ଦେଖି ସରକାର ତାଙ୍କୁ ମହାରାଜା ଉପାଧି ଦେଇଥିଲେ ।

## ବାଳକ ଶ୍ରୀରାମଚନ୍ଦ୍ର

ମହାରାଜା ଶ୍ରୀରାମଚନ୍ଦ୍ର କୃଷ୍ଣଚନ୍ଦ୍ରଙ୍କର ବଡ଼ ପୁଅ । ୧୮୭୦ ମସିହା ଡିସେମ୍ବର ମାସ ୧୭ ତାରିଖରେ ଶ୍ରୀରାମଚନ୍ଦ୍ର ଜନ୍ମ ହୋଇଥିଲେ । ସେତେବେଳେ ମୟୂରଭଞ୍ଜରେ ସୁଖଶାନ୍ତିର ଦିନ । ରାଜା ପ୍ରଜା ପରମ ଶାନ୍ତିରେ ଦିନ କାଟୁଥିଲେ ।

କଥାରେ ଅଛି, 'ତୁଳସୀ ଦୁଇପତ୍ରରୁ ବାସେ ।' ରାଜକୁମାର ଶ୍ରୀରାମଚନ୍ଦ୍ର ପିଲାଦିନରୁ ରୂପରେ ଯେପରି ଫୁଟି ପଡ଼ିଲେ, ଗୁଣରେ ମଧ୍ୟ ସେହିପରି ବଢ଼ିଉଠିଲେ । ତାଙ୍କ ପରି ସୁନ୍ଦର ରାଜକୁମାର ସେ ସମୟରେ ଓଡ଼ିଶା ରାଜମହଲରେ କେହି ନ ଥିଲେ । ଥରେ ସେ ହସି କରି କଥା କହିଲେ ସତେ ଯେପରି ସେଥିରୁ ଅମୃତ ଝରି

ପଢ଼ୁଥିଲେ । ପିତାମାତା ଏପରି ପୁଅଙ୍କୁ ପାଇ, ରାଜ୍ୟବାସୀ ଏପରି ରାଜକୁମାରଙ୍କୁ ଦେଖି, ନିଜ ନିଜକୁ ଧନ୍ୟ ମନେ କଲେ ।

ରୂପ ସଙ୍ଗେ ଗୁଣରେ ମଧ୍ୟ ସମସ୍ତେ ମୋହିତ ହୋଇଗଲେ । ପିଲାଦିନେ ଶ୍ରୀରାମଚନ୍ଦ୍ର ଖେଳିବାକୁ ଭାରି ଭଲ ପାନ୍ତି । ସାଧାରଣ ପିଲାଙ୍କ ଖେଳ ପରି ସେ ଖେଳନ୍ତି ନାହିଁ । ଆଗରୁ ତାଙ୍କୁ କିଏ ଶିଖାଇଲା ପରି ନୂଆ ନୂଆ ଖେଳ ଖେଳନ୍ତି । ନିଜେ ନିଜକୁ ହାକିମ ବୋଲି କହି, କେତେ ଗୁଡ଼ିଏ ମାଟି, ପଥର, ଇଟାକୁ ଦୋଷୀ ଲୋକ ବୋଲି ଆଗରେ ଥୋଇ, ମକଦ୍ଦମା ବିଚାର କରନ୍ତି । କାହାର ଦୋଷ ଦେଖି ଖଲାସ କରନ୍ତି, କାହାକୁ ଦଣ୍ଡ ଦିଅନ୍ତି । କେବେ କେବେ ମଧ୍ୟ ନିଜେ ସେନାପତି ବେଶ ହୋଇ ଗୁଡ଼ିଏ କାଠିକୁ ସୈନ୍ୟକରି ଯୁଦ୍ଧଯାତ୍ରା ଖେଳ ଖେଳି ବସନ୍ତି ।

ଅତି ଅଳ୍ପ ବୟସରେ ଶ୍ରୀରାମଚନ୍ଦ୍ରଙ୍କର ପାଠପଢ଼ା ଆରମ୍ଭ ହେଲା । ପାଠ ପ୍ରତି ମଧ୍ୟ ତାଙ୍କର ଭାରି ଆଗ୍ରହ ଓ ଉତ୍ସାହ ଥିଲା । ଥରେ ସେ ଯାହା ଶୁଣୁଥିଲେ, ସେ କଥା ଆଉ ଥରେ ତାଙ୍କୁ ଘୋଷିବାକୁ ପଡ଼ୁ ନ ଥିଲା ।

ପ୍ରଥମେ ତାଙ୍କୁ ଅବଧାନଙ୍କ ପାଖେ ପଢ଼ିବାକୁ ପଡ଼ିଲା । ସେ ସମୟରେ ପିଲାମାନେ ଅବଧାନଙ୍କ ପାଖେ ଖଡ଼ିପାଠ ପଢ଼ି ତା ପରେ ବଡ଼ ସ୍କୁଲକୁ ଯାଉଥିଲେ । ଶ୍ରୀରାମଚନ୍ଦ୍ରଙ୍କୁ ଏହିପରି ଅବଧାନଙ୍କ ପାଖେ ଖଡ଼ିପାଠ ପଢ଼ିବାକୁ ପଡ଼ିଥିଲା । ରାଜପୁତ୍ର ହେଲେ କ'ଣ ହେଲା, ତାଙ୍କ ମନରେ ତିଳେ ହେଲେ ରାଗ, ଅଭିମାନ, ସାନବଡ଼ ଭାବ ନ ଥିଲା । ପିଲାଦିନୁ ସେ ନିତାନ୍ତ ସରଳ । ତେଣୁ ସେ ଖଡ଼ିପାଠ ପଢ଼ିଲାବେଳେ ଅବଧାନଙ୍କ ପାଖେ ଠିଆ ହୋଇ ପାଠ ଘୋଷିବାକୁ ବା ଅନ୍ୟ ପିଲାଙ୍କ ସଙ୍ଗେ ଏକାଠି ବସିବାକୁ ତିଳେହେଲେ ମନରେ କିଛି ଭାବୁ ନ ଥିଲେ ।

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଏହିପରି ସରଳ ଓ ସାଧୁ ପ୍ରକୃତିର ଲୋକ ଥିଲେ । ଖଣ୍ଡପାଠ ଶେଷ କରିବାକୁ ତାଙ୍କୁ ମୋଟେ ଦୁଇ ବର୍ଷ ଲାଗିଥିଲା ।

ନଅବର୍ଷ ବୟସରେ ମହାରାଜା କୃଷ୍ଣଚନ୍ଦ୍ର ଶ୍ରୀରାମଚନ୍ଦ୍ରଙ୍କୁ ବ୍ରତ କରାଇଲେ । ସେତେବେଳକୁ ଶ୍ରୀରାମଚନ୍ଦ୍ର ଇଂରେଜି ଓ ସଂସ୍କୃତ ପଢ଼ା ଆରମ୍ଭ କରିଥିଲେ ।

ଅଳ୍ପଦିନ ମଧ୍ୟରେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ସୁଖମୟ ଜୀବନରେ ଦୁଃଖର ଛାୟା ଆସି ପଡ଼ିଲା। ରାଜକୁମାର ଶ୍ରୀରାମଚନ୍ଦ୍ର ବସନ୍ତ ରୋଗରେ ପଡ଼ିଲେ ।

ଏ ବିପଦବେଳେ କୃଷ୍ଣଚନ୍ଦ୍ରଙ୍କୁ ସଂସାର ଅନ୍ଧାର ଦିଶିଲା । ରୋଗ ଶେଯ ପାଖେ ବସି ଦିନରାତି ଭଗବାନଙ୍କୁ ପ୍ରାର୍ଥନା କଲେ, 'ପ୍ରଭୁ, ମୋ ଜୀବନ ନେଇ ଶ୍ରୀରାମର ଜୀବନ ରକ୍ଷା କର ।'

ଇତିହାସରେ ଶୁଣାଯାଉଛି ଯେ, ହୁମାୟୁନଙ୍କ ଜୀବନ ରକ୍ଷା ପାଇଁ ବାବର ପ୍ରଭୁଙ୍କ ପାଖେ ଏହିପରି ପ୍ରାର୍ଥନା କରିଥିଲେ । ମୟୂରଭଞ୍ଜର ରାଜଦାଣ୍ଡରେ ସେଦିନ ଏହିପରି ଦୃଶ୍ୟ ଘଟିଲା । ଏହି ପ୍ରାର୍ଥନାର କିଛି ଦିନ ପରେ ଶ୍ରୀରାମଚନ୍ଦ୍ରଙ୍କ ଶରୀର ଆରୋଗ୍ୟ ହୋଇ ଆସିଲା ଏବଂ କ୍ରମେ କୃଷ୍ଣଚନ୍ଦ୍ର ବସନ୍ତ ରୋଗରେ ପୀଡ଼ିତ ହୋଇ ପଡ଼ିଲେ । କିଛି ଦିନ ପରେ ସେହି ରୋଗରେ ତାଙ୍କର ଜୀବନଦୀପ ଲିଭିଗଲା ।

ଶ୍ରୀରାମଚନ୍ଦ୍ରଙ୍କୁ ଏ ଦୁଃଖ ବଡ଼ ବାଧିଥିଲା । ଏ ଦୁଃଖ ତାଙ୍କ ମନରୁ ପାସୋର ନ ଯାଉଣୁ ପୁଣି ଆଉ ଏକ ବଜ୍ର ଆସି ପଡ଼ିଲା । ତାଙ୍କର ମାଆ ସଂସାର ଛାଡ଼ି ଚାଲିଗଲେ ।

# ଛାତ୍ର ଶ୍ରୀରାମଚନ୍ଦ୍ର

ପିତାମାତାଙ୍କ ମୃତ୍ୟୁ ପରେ ଶ୍ରୀରାମଚନ୍ଦ୍ରଙ୍କୁ କେତେ ବର୍ଷ ପାଇଁ ମୟୂରଭଞ୍ଜ ଏକପ୍ରକାର ଛାଡ଼ିବାକୁ ପଡ଼ିଲା । ତାଙ୍କ ପାଠ ପଢ଼ା ପାଇଁ ସରକାର ପକ୍ଷରୁ ବନ୍ଦୋବସ୍ତ କରାଗଲା । ସେ ସମୟରେ ବଙ୍ଗ-ବିହାର-ଓଡ଼ିଶାର ଲେଫ୍‌ଟେନାଣ୍ଟ ସାହେବ ତାଙ୍କ ପଢ଼ାର ବନ୍ଦୋବସ୍ତ ପାଇଁ କର୍ଣ୍ଡେଲ୍ ବୋଲି ଜଣେ ସାହେବଙ୍କୁ କଟକ ପଠାଇଲେ । ଶ୍ରୀରାମଚନ୍ଦ୍ର ମୟୂରଭଞ୍ଜରୁ ଯାଇ କଟକରେ ଥିବା ମୟୂରଭଞ୍ଜ ଭବନରେ ଗୁରୁ କର୍ଣ୍ଡେଲ୍‌ଙ୍କ ପାଖରେ ପାଠ ପଢ଼ାରେ ମନ ଦେଇ ଲାଗିଗଲେ । ତାଙ୍କୁ ଓଡ଼ିଆ ପଢ଼ାଇବା ପାଇଁ ଆଉ ଜଣେ ଓଡ଼ିଆ ପଣ୍ଡିତ ମଧ୍ୟ ଥାଆନ୍ତି । ମହାରାଜା କୃଷ୍ଣଚନ୍ଦ୍ର ସେ ପଣ୍ଡିତଙ୍କୁ ଆଗରୁ ବାଛିଦେଇ ଶିକ୍ଷକ କରି ରଖାଇ ଥିଲେ । ଶ୍ରୀରାମଚନ୍ଦ୍ର ପିଲାଦିନୁ ଏହାଙ୍କ ପାଖରେ ସଂସ୍କୃତ ଓ ଇଂରେଜୀ ପଢ଼ା ଆରମ୍ଭ କରିଥିଲେ ।

ଶ୍ରୀରାମଚନ୍ଦ୍ର କର୍ଣ୍ଡେଲ୍ ସାହେବଙ୍କ ପାଖେ ବାର ବର୍ଷ କାଳ ରହି ପାଠ ପଢ଼ିଥିଲେ । କର୍ଣ୍ଡେଲ୍ ସାହେବ ଜଣେ ଅତି ଉତ୍ତମ ଲୋକ । ଆପଣା ପୁଅ ପରି ସେ ଶ୍ରୀରାମଚନ୍ଦ୍ରଙ୍କୁ ସ୍ନେହ, ଆଦର କରୁଥିଲେ । ତାଙ୍କର ଚରିତ୍ର ଗଠନ ପାଇଁ ସେ ମୁହୂର୍ତ୍ତେ ହେଲେ ହେଳା କରି ନାହାନ୍ତି । ଶ୍ରୀରାମଚନ୍ଦ୍ର ମଧ୍ୟ ଗୁରୁଙ୍କର ସ୍ନେହ ଆଶ୍ୱାସନା ପାଇ ତାଙ୍କ ପ୍ରତି ବଡ଼ ଅନୁରକ୍ତ ହୋଇ ପଡ଼ିଥିଲେ ।

ଦୁହେଁ ଗୁରୁ ଶିଷ୍ୟ, ମାତ୍ର କାର୍ଯ୍ୟକ୍ଷେତ୍ରରେ ସାଙ୍ଗସାଥି ପରି ଥିଲେ । ପାଠପଢ଼ାଠାରୁ ଘୋଡ଼ାଚଢ଼ା ପର୍ଯ୍ୟନ୍ତ ସବୁଥିରେ ଦୁହେଁ ଦୁହିଁଙ୍କର ପରମ ସାଥି ଥିଲେ । ଶ୍ରୀରାମଚନ୍ଦ୍ରଙ୍କ ଉଦାର ହୃଦୟ, ସରଳ ପ୍ରକୃତି ଦେଖି ଗୁରୁ କର୍ଣ୍ଡେଲ୍ ସାହେବ ଏତେ ମୁଗ୍ଧ

ହୋଇ ପଡ଼ିଥିଲେ ଯେ, ସେ ଅନ୍ୟମାନଙ୍କ ଆଗରେ ସବୁବେଳେ ତାଙ୍କର ପ୍ରଶଂସା ଗାଉଥିଲେ ।

ଶ୍ରୀରାମଚନ୍ଦ୍ରଙ୍କର ଇଂରେଜୀରେ ବଡ଼ ଦକ୍ଷତା ଥିଲା । ଖେଳିବାକୁ, ଶିକାର କରିବାକୁ ପିଲାଦିନୁ ତାଙ୍କ ମନରେ ବଡ଼ ଉତ୍ସାହ ଖେଳୁଥିଲା । ତାଙ୍କ ପରି ସାହସୀ ରାଜକୁମାର ସେତେବେଳେ ଓଡ଼ିଶାରେ କେହି ନ ଥିଲେ ବୋଲି କହିଲେ ଚଳେ ।

## ସିଂହାସନରେ ଶ୍ରୀରାମଚନ୍ଦ୍ର

ପାଠ ପଢ଼ିବା ପିପାସା ହୃଦୟରୁ ନ ତୁଟୁଣୁ ଶ୍ରୀରାମଚନ୍ଦ୍ରଙ୍କୁ ପଢ଼ା ଛାଡ଼ିବାକୁ ପଡ଼ିଲା । କଟକ କଲେଜରେ ସେ ଆଇ. ଏ. ପାଶ୍ କରିବା ପରେ ରାଜ୍ୟକୁ ଫେରି ରାଜକାର୍ଯ୍ୟ ବୁଝିବାକୁ ବାଧ୍ୟ ହେଲେ । ରାଜକାର୍ଯ୍ୟରେ ସେ ସବୁବେଳେ ଲାଗିରହି ମଧ୍ୟ ପଢ଼ାପଢ଼ି ଛାଡ଼ିଲେ ନାହିଁ । ଘରେ ଘରୋଇ ଶିକ୍ଷକ ରଖାଇ ବି. ଏ. ପରୀକ୍ଷା ଦେବା ପାଇଁ ସଜ ହେଲେ । ମାତ୍ର ନାନା ଅସୁବିଧା ଯୋଗୁଁ ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିଲେ ନାହିଁ । ଭୋଗବିଳାସ ଭିତରେ ବଢ଼ି, ଜ୍ଞାନ ଅର୍ଜନ ପାଇଁ ସେ ଯେପରି କଠୋର ପରିଶ୍ରମ କରୁଥିଲେ, ବାସ୍ତବିକ ତାହା ସମସ୍ତଙ୍କର ଅନୁକରଣ କରିବାର କଥା ।

ଶ୍ରୀରାମଚନ୍ଦ୍ର ଏତେ ବେଶୀ ପଢ଼ୁଥିଲେ ଯେ, ସେଥିରେ ତାଙ୍କ ଦେହ ବେରାମ ହେବା ଆଶଙ୍କା ହେଉଥିଲା । ଥରେ କଲିକତାଠାରେ ତାଙ୍କ ଆଖି ଖରାପ ହେଲା । ଡାକ୍ତରମାନେ ଚିକିତ୍ସା କରି ତାଙ୍କୁ ଏକ ଅନ୍ଧାର ଘରେ ରହିବାକୁ ବ୍ୟବସ୍ଥା ଦେଲେ ଏବଂ କୌଣସି ବହିପତ୍ର ପଢ଼ିବାକୁ ମନାକଲେ । ମାତ୍ର ଶ୍ରୀରାମଚନ୍ଦ୍ର ବହି ନ ପଢ଼ି ରହି ପାରିଲେ ନାହିଁ,

ଲୁଟର କରି ପଢ଼ିବାକୁ ଲାଗିଲେ । ଏହାଦ୍ୱାରା ରୋଗ ଆହୁରି ବଢ଼ିଲା । ଶେଷକୁ ଡାକ୍ତର ବାଧ୍ୟ ହୋଇ ତାଙ୍କ ଆଖି ବନ୍ଧନ କରାଇ ଚିକିତ୍ସା କଲେ ।

୧୮୯୨ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଶ୍ରୀରାମଚନ୍ଦ୍ର ମୟୂରଭଞ୍ଜର ସିଂହାସନରେ ବସିଲେ । ରାଜଦଣ୍ଡ ଧରିଲା ଦିନୁ, ନିଜ ହାତରେ ରାଜ୍ୟର କ୍ଷମତା ପାଇଲା ଦିନୁ ସେ ରାଜ୍ୟର ମଙ୍ଗଳପାଇଁ, ପ୍ରଜାଙ୍କ ହିତପାଇଁ ମନପ୍ରାଣ ଢାଳିଦେଲେ ।

ଶ୍ରୀରାମଚନ୍ଦ୍ରଙ୍କୁ ସରଳତାର ଅବତାର କହିଲେ ଚଳେ । ଗର୍ବ, ଅହଙ୍କାର ତାଙ୍କ ହୃଦୟରେ ସ୍ଥାନ ପାଇ ନ ଥିଲା । ପିଲାଦିନେ ସେ ସାଙ୍ଗ ସାଥିଙ୍କ ସଙ୍ଗେ ଅବାଧରେ ମିଶି ଖେଳୁଥିଲେ, ସ୍କୁଲ ବୟସରେ ସହପାଠୀଙ୍କ ସହିତ ସରଳ ଭାବରେ ମିଶୁଥିଲେ ଏବଂ ରାଜଦଣ୍ଡ ଧରି ସମସ୍ତଙ୍କୁ ସମାନ ଭାବରେ ଦେଖୁଥିଲେ । ପାଠ ପଢ଼ୁଥିଲା ବେଳେ ସେ ଅନେକ ସ୍ଥାନ ବୁଲି ଯାଇଥିଲେ ମାତ୍ର ରାଜବେଶ ବା ରାଜଚିହ୍ନ ତାଙ୍କରେ ସେ ଯିବା ଇଚ୍ଛା କରୁନଥିଲେ । ତାଙ୍କର ଏହି ସରଳ ପ୍ରକୃତି ଯୋଗୁଁ ସେ ସବୁଠାରେ ସମସ୍ତଙ୍କର ଅତି ପ୍ରିୟପାତ୍ର ହୋଇଥିଲେ ।

ପ୍ରଜାପାଳନ ରାଜାର ଧର୍ମ, ଏ କଥା ଶ୍ରୀରାମଚନ୍ଦ୍ରଙ୍କୁ ଭଲ ରୂପେ ଜଣାଥିଲା । ଲକ୍ଷ ଲକ୍ଷ ଲୋକଙ୍କ ମଉଡ଼ମଣି ହେବା ପାଇଁ ଯେତେ ଯେତେ ଗୁଣ ଦରକାର, ସେ ସବୁ ମହତ୍‌ଗୁଣ ତାଙ୍କ ଠାରେ ଥିଲା ।

ରାଜଦଣ୍ଡ ଧରିବା ପରେ ଶ୍ରୀରାମଚନ୍ଦ୍ର ରାଜନୀତି ଓ ଦର୍ଶନ ଶାସ୍ତ୍ରକୁ ଭଲ କରି ପଢ଼ିବାରେ ଲାଗିଲେ । ନିଜ ରାଜ୍ୟକୁ ଏକ ଆଦର୍ଶ ରାଜ୍ୟ କରି ଗଢ଼ିବା ପାଇଁ ସେ ବରାବର ଚେଷ୍ଟା

କଲେ । ସ୍କୁଲ କଲେଜରେ ପାଠ ପଢୁଥିବା ବେଳୁ ସେ ଏହି ମହତ୍ ଭାବକୁ ମନରେ ରଖିଥିଲେ । ଏବେ ନିଜର ବହୁଦର୍ଶିତା ରୂପେ ଗୁଣୀ ଓ ଉଦାର ଲୋକମାନଙ୍କୁ ପାଖରେ ରଖି ଶାନ୍ତିରେ ପ୍ରଜା ଚାଳିବାକୁ ଲାଗିଲେ ।

ଏହି ସମୟରେ ସ୍ୱର୍ଗତ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମହିମା ଫୁଟି ଉଠୁଥିଲା । ତାଙ୍କ ଗୁଣରେ ମୁଗ୍ଧ ହୋଇ ଶ୍ରୀରାମଚନ୍ଦ୍ର ତାଙ୍କୁ ନିଜ ରାଜସରକାରର ଓକିଲ ପଦରେ ବରଣ କରି ନେଲେ । ସ୍ୱର୍ଗତ ଗୋପବନ୍ଧୁ ସେତେବେଳେ ସକଳ କାର୍ଯ୍ୟରେ ତାଙ୍କର ପରମ ସଖା ରୂପେ ପରାମର୍ଶଦାତା ଥିଲେ । ଦୁହେଁ ଦୁହିଁଙ୍କୁ ପ୍ରାଣର ସହିତ ଭଲ ପାଉଥିଲେ । ରାମଚନ୍ଦ୍ର ଯେତେବେଳେ ପୃଥିବୀ ଭ୍ରମଣରେ ବାହାରିଲେ ସେହି ସମୟରେ ସ୍ୱର୍ଗତ ଗୋପବନ୍ଧୁ ଗୋଟିଏ ଗୀତ ଲେଖିଥିଲେ ।

"ରାମଚନ୍ଦ୍ର ମହାରାଜା ପରଜା ପରାଣଧନ
ଯାଉଛ କେଉଁ ବିଦେଶେ ହେ ଭଞ୍ଜ କଞ୍ଜ-ତପନ ।
× × × ×
"ଭୁଲିବ ନାହିଁ ଭୂପାଳ ସରଳ ଶୁଦ୍ଧ ସଜଳ
ମେଘାସନ ଘୃତକୁଞ୍ଜ ବୁଢ଼ାବଳଙ୍ଗ ପୁଳିନ
ଗୋହାଡ଼ ପାହାଡ଼ ଦେଶ, ଭୁଲିବ ନାହିଁ ନରେଶ
ଘେନ ଭବ୍ୟ ଅବଧାନେ ଏ ବିମଳ ନିବେଦନ ।"

ରାମଚନ୍ଦ୍ର ଓ ଗୋପବନ୍ଧୁଙ୍କ ମଧ୍ୟରେ ଏପରି ଘନିଷ୍ଠ ବନ୍ଧୁତା ଥିଲା ଯେ, କୌଣସି କାର୍ଯ୍ୟ କଲାବେଳେ ରାମଚନ୍ଦ୍ର ଗୋପବନ୍ଧୁଙ୍କ ବିନା ପରାମର୍ଶରେ କରୁ ନ ଥିଲେ ।

ରାଜା ହେବାର ଚାରିବର୍ଷ ପରେ ୧୮୯୬ ମସିହାରେ ରାମଚନ୍ଦ୍ରଙ୍କର ବିବାହ ହେଲା । ସେତେବେଳକୁ ତାଙ୍କ ବୟସ ୨୫

ବର୍ଷ । ନିଜର ସହଧର୍ମିଣୀ ରୂପେ ସେ ଯାହାଙ୍କୁ ପାଇଲେ, ରୂପରେ ଗୁଣରେ ସେ ଲକ୍ଷ୍ମୀ ପରି । ତାଙ୍କ ନାଁ ଥିଲା ଲକ୍ଷ୍ମୀକୁମାରୀ ।

ଏହି ବିବାହ ପୂର୍ବରୁ ରାମଚନ୍ଦ୍ରଙ୍କ ହୃଦୟରେ ଘୋର ପରିବର୍ତ୍ତନ ଆସିଥିଲା । ସେହି ସମୟରେ ବ୍ରାହ୍ମଧର୍ମର ସ୍ରୋତ ବଙ୍ଗ ଦେଶରେ ବହୁଥିଲା । ରାଜା ରାମମୋହନଙ୍କ ଉଦାର ମତରେ ଶହ ଶହ ଲୋକ ଦୀକ୍ଷିତ ହେଉଥିଲେ । ରାମଚନ୍ଦ୍ର ସେହି ଧର୍ମର ପରିଚୟ ପାଇ ନିଜକୁ ସେହି ଭାବରେ ଗଢ଼ିବାରେ ଲାଗିଲେ ।

## ଗୃହୀ ଶ୍ରୀରାମଚନ୍ଦ୍ର

ଲକ୍ଷ୍ମୀକୁମାରୀଙ୍କୁ ବିଭା ହେବା ପୂର୍ବରୁ ବ୍ରାହ୍ମଧର୍ମର ପ୍ରଧାନ ପ୍ରଚାରକ ଓ ଭକ୍ତ କେଶବଚନ୍ଦ୍ର ସେନଙ୍କ ଜ୍ୟେଷ୍ଠା କନ୍ୟାଙ୍କ ସହିତ ରାମଚନ୍ଦ୍ରଙ୍କର ବିବାହ ପ୍ରସ୍ତାବ ଚାଲିଥିଲା । ସେଥିରେ ପ୍ରଜାମାନେ ଆପତ୍ତି କଲେ ଯେ ହିନ୍ଦୁ ହୋଇ ବ୍ରାହ୍ମ କନ୍ୟା ବିଭାହେବା ଧର୍ମ-ବିରୁଦ୍ଧ । ଲୋକମତ ପ୍ରତି ଶ୍ରୀରାମଚନ୍ଦ୍ରଙ୍କର ବଡ଼ ଖାତିର ଥିଲା । ସେ ଏ ବିଷୟରେ କିଛି ନ କହି ନୀରବ ରହିଲେ । କେଶବଚନ୍ଦ୍ରଙ୍କ କନ୍ୟାଙ୍କୁ ବିଭା ହେବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ଥିଲେ ସୁଦ୍ଧା କେବଳ ପ୍ରଜାରଞ୍ଜନ ଲାଗି, ତାଙ୍କ ଅସନ୍ତୋଷ ଭାଜନ ନ ହେବା ପାଇଁ ବାଧ୍ୟ ହୋଇ ସେ ପ୍ରସ୍ତାବ ଛାଡ଼ିଲେ ।

ରାଜରାଣୀ ଲକ୍ଷ୍ମୀକୁମାରୀ ତିନୋଟି ସନ୍ତାନ ପ୍ରସବ କରି ସଂସାର ଛାଡ଼ି ଚାଲିଗଲେ । ବଡ଼ଟି କନ୍ୟା ଶ୍ରୀପଦମଞ୍ଜରୀ, ମଝିଆଟି ବଡ଼ପୁଅ ସ୍ୱର୍ଗତ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଏବଂ ସାନଟି ପ୍ରତାପଚନ୍ଦ୍ର ଭଞ୍ଜ ।

ଲକ୍ଷ୍ମୀକୁମାରୀଙ୍କ ମୃତ୍ୟୁ ତାଙ୍କୁ ଏତେଦୂର ବାଧିଥିଲା ଯେ ସେ ସେଠି କେତେବର୍ଷ ଜୀବନର ଭୋଗ ବିଳାସରୁ ଅଲଗା

ହୋଇଥିଲେ । ସବୁବେଳେ ଗର୍ଭୀର ଦୁଃଖରେ ସବୁ କଥା ଭଗବାନଙ୍କ ଉପରେ ନିର୍ଭର କରି ଦିନ କାଟୁଥିଲେ । ବେଳେ ବେଳେ ସଂସାର ତାଙ୍କୁ ନିତାନ୍ତ ଅସାର ବୋଧ ହେଉଥିଲା ।

ତେଣେ କେଶବଚନ୍ଦ୍ରଙ୍କର ଯେଉଁ କନ୍ୟା ଶ୍ରୀରାମଚନ୍ଦ୍ରଙ୍କୁ ବିଭା ହେବା ପାଇଁ ପ୍ରଥମେ ଇଚ୍ଛା କରିଥିଲେ, ସେ ତାଙ୍କର ଧ୍ୟାନରେ ଅବିବାହିତା ରହିଥିଲେ । ଯାହାଙ୍କୁ ଥରେ ବିଭାହେବା ପାଇଁ ହୃଦୟ ଦାନ କରିଥିଲେ, ତାଙ୍କର ରୂପ ଗୁଣକୁ ହୃଦୟରେ ଧ୍ୟାୟି ପୂଜା କରୁଥିଲେ ।

ଏହିପରି ସମୟରେ ଶ୍ରୀରାମଚନ୍ଦ୍ରଙ୍କର ଦ୍ୱିତୀୟ ଥର ବିବାହର ପ୍ରସ୍ତାବ ଉଠିଲା । ବ୍ରାହ୍ମ ମହିଳାକୁ ବିଭା ହେବା କଥାରେ ପୁଣି ଚହଳ ପଡ଼ିଲା ।

ଶ୍ରୀରାମଚନ୍ଦ୍ର ପିଲାଦିନୁ ଦୁଃଖର ଦାଉ ସହି ଆସିଥିଲେ । ବାଲ୍ୟବୟସରେ ପିତାମାତା ସଂସାରରୁ ବିଦାୟ ନେଇଗଲେ, ଯୌବନରେ ରାଣୀ ଲକ୍ଷ୍ମୀକୁମାରୀଙ୍କ କାଳ ହୋଇଗଲା; ତା ପରେ ଦ୍ୱିତୀୟ ଥର ବିଭା ହେବାର କଷ୍ଟ ଦିନ ଉତ୍ତାରୁ ତାଙ୍କ ହୃଦୟର ସ୍ନେହ ପ୍ରତିମା କନ୍ୟା ଶ୍ରୀପଦ୍ମମଞ୍ଜରୀଙ୍କ ଅକାଳମୃତ୍ୟୁ ହେଲା । ଏ ଦୁଃଖରେ ସେ ଭାଜି ପଡ଼ିଲା ପରି ହେଲେ ।

## ମହାରାଜା ଶ୍ରୀରାମଚନ୍ଦ୍ର

ସିଂହାସନରେ ବସିବାର ଦୁଇ ବର୍ଷ ପୂର୍ବରୁ ଶ୍ରୀରାମଚନ୍ଦ୍ରଙ୍କୁ ରାଜକାର୍ଯ୍ୟ ବୁଝାସୁଝା କରିବାକୁ ପଡ଼ୁଥିଲା । ରାଜା ହେଲା ବେଳକୁ ସେ ରାଜ୍ୟର ଭଲମନ୍ଦ କଥା, ପ୍ରଜାଙ୍କ ଅଭାବ ଅସୁବିଧା ବିଷୟ ଭଲ ଭାବରେ ଜାଣି ପାରିଥିଲେ । ରାଜଦଣ୍ଡ ଧରି ପ୍ରଜାମାନଙ୍କ ମନ ନେଇ କାର୍ଯ୍ୟ କରିବା ଲାଗି ସେ ଗୋଟିଏ କାଉନ୍‌ସିଲ

ଗଢ଼ିଲେ । କେତେଜଣ ସରକାରୀ ଏବଂ ବେସରକାରୀ ମେମ୍ବରଙ୍କୁ ନେଇ କାଉନ୍‌ସିଲଟି ଗଢ଼ାହେଲା । ନିଜେ ସେ କାଉନ୍‌ସିଲର ସଭାପତି ହେଲେ । କୌଣସି ଆଇନର ବଦଳାବଦଳି ଦରକାର ପଡ଼ିଲେ, ନୂଆ ଆଇନ ଗଢ଼ିବାକୁ ହେଲେ, ଏହି କାଉନ୍‌ସିଲ୍‌ର ମତ ନନେଇ ସେ କିଛି କରୁ ନଥିଲେ ।

ସ୍ୱର୍ଗତ କୃଷ୍ଣଚନ୍ଦ୍ରଙ୍କ ଅମଳରେ ରାଜ୍ୟର ଶାସନ ପ୍ରଣାଳୀ ବଦଳି ଥିଲେ ମଧ୍ୟ ଜଟିଳ ଥିଲା । ସୁବିଧା ଓ ଶାନ୍ତିରେ ରାଜ୍ୟ ଶାସନ କରିବା ପାଇଁ ସେ ବିଚାର ଓ ଶାସନ ବିଭାଗକୁ ଅଲଗା ଅଲଗା କରିଦେଲେ । ଏହାର ଫଳରେ ସେ ନିଜେ ରାଜା ଆସନରେ ବସି ଯେ ଆଦେଶ ଦେଉଥିଲେ ସେହି ଆଦେଶରେ ଭଲମନ୍ଦ, ଦୋଷାଦୋଷ ବିଚାର, ବିଚାର-ବିଭାଗ କରିବାର ସୁବିଧା ପାଉଥିଲା । ଦରକାର ବେଳେ ତାଙ୍କ ଆଦେଶର ମଧ୍ୟ ଦୋଷ ଦେଖାଇ ଦିଆ ହେଉଥିଲା । ଦୋଷ ତ୍ରୁଟି ସେ ଆଗ୍ରହରେ ନିଜର ଭୁଲ ସ୍ୱୀକାର କରୁଥିଲେ ।

ତାଙ୍କ ଅମଳରେ ଶାସନ ସୁବିଧା ପାଇଁ ରାଜ୍ୟକୁ ଚାରୋଟି ବିଭାଗରେ ବିଭକ୍ତ କରାଯାଇ ନୂଆ ନୂଆ ଶାସନ ବିଭାଗ ଖୋଲିଲା । ନୂଆ ଆଇନ ଗଢ଼ା ହୋଇ ଶିକ୍ଷା, ସ୍ୱାସ୍ଥ୍ୟ ଓ ପୁଲିଶ ବିଭାଗର ସୃଷ୍ଟି ହେଲା । ଆଗେ ଯେଉଁମାନେ ପୁଲିଶ କାର୍ଯ୍ୟ କରୁଥିଲେ, ସେଥିରେ ଶାସନ ସୁବିଧା ହେଉ ନଥିଲା । ପୁରୁଣା-କାଳିଆ ଗାଁ ସରଦାର ପ୍ରଥାରେ କାର୍ଯ୍ୟ ଚାଲିଥିଲା । ଶ୍ରୀରାମଚନ୍ଦ୍ର ଏସବୁ ପୁରୁଣାକାଳିଆ ନିୟମ ଉଠାଇ ଦେଇ ଇଂରେଜ ଶାସିତ ରାଜ୍ୟର ପୁଲିଶ ବିଭାଗ ପରି ନିଜ ରାଜ୍ୟର ପୁଲିଶ ବିଭାଗ ଗଢ଼ିଲେ । ଗାଁ ଗାଁରେ ମଧ୍ୟ ପଞ୍ଚାୟତ ଗଢ଼ାଗଲା । ରାଜ୍ୟର

ଛକ ସ୍ଥାନମାନଙ୍କରେ ଶାନ୍ତି ରକ୍ଷାପାଇଁ ପୁଲିଶଥାନା ସବୁ ରହିଲା ।

ଖାଲି ଏତିକ ନୁହେଁ, ଶିକ୍ଷା ଓ ଆଇନ ବିଭାଗ ପ୍ରତି ତାଙ୍କର ଭାରି ନଜର ରହିଥିଲା । ସେ ଷଟେ ନୂଆ ନୂଆ ଆଇନ ଗଢ଼ି, ତାକୁ କାଉନ୍‌ସିଲରେ ପକାଇ ଚଳାଇବାରେ ଲାଗିଲେ । ବିଚାର ପାଇଁ କଚେରି ସବୁ ବସିଲା । ସେ ସବୁ ବିଭାଗର ଉପରେ ରହି ନ୍ୟାୟ ଅନ୍ୟାୟ ବିଚାର ଦେଖୁଥିଲେ ।

ଅନେକ ସ୍ଥାନରେ ଦେଖାଯାଏ ଯେ, ଲୋକ ଅଧିକାର ପାଇଲେ ଭୋଗ ବିଳାସ ବା ଗର୍ବରେ ମାତି ଅନ୍ୟ ପ୍ରତି ଦୃଷ୍ଟି ରଖେ ନାହିଁ । ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ଏହା ସ୍ୱପ୍ନର କଥା ଥିଲା । ଉପରେ ଭଗବାନ, ତଳେ ଜନ୍ମଭୂମି ଏବଂ ହୃଦୟ ଭିତରେ ବିବେକ ଚିନ୍ତାକରି ସେ ଯାହା ହେଲେ କରୁଥିଲେ ।

କେତେବର୍ଷ ଭିତରେ ଶ୍ରୀରାମଚନ୍ଦ୍ରଙ୍କର ଏହି ଶାସନ ପ୍ରଣାଳୀ ଦେଖି ଇଂରେଜ ସରକାର ତାଙ୍କୁ ମହାରାଜା ଉପାଧି ଦେଲେ ।

## ବିଦେଶରେ ଶ୍ରୀରାମଚନ୍ଦ୍ର

ଆଗରୁ କୁହା ଯାଇଛି, ଶ୍ରୀରାମଚନ୍ଦ୍ରଙ୍କର ଦେଶ ବିଦେଶ ବୁଲିବା ପାଇଁ ଭାରି ଇଚ୍ଛା ଥିଲା । ଅତି ପିଲାଦିନୁ ସେ ବଣ, ଗିରି, ପାହାଡ଼, ନଦୀ, ହ୍ରଦ, ସମୁଦ୍ରର ଶୋଭା ଦେଖି ଭାରି ମୁଗ୍‌ଧ ହେଉଥିଲେ । ପ୍ରକୃତି ଶୋଭାରେ ସେ ନିଜକୁ ପାସୋରି ଦେଉଥିଲେ । ପାଠ ପଢ଼ିବା ବେଳେ ସେ ଲଙ୍କା ଦ୍ୱୀପ ବୁଲି ଯାଇଥିଲେ ଏବଂ ଦାର୍ଜିଲିଂ ଯାଇ ସେଠାରେ କେତେ ଦିନ କଟାଇଥିଲେ । ରାଜା ହେବା ପରେ ତାଙ୍କର ଏହି ଇଚ୍ଛା ଆହୁରି ବେଶୀ ବଢ଼ିଲା । ସେ ଭାବିଲେ, ପୃଥିବୀର ନାନା ଦେଶ ବୁଲି ସେ

ସବୁ ଦେଶର ଶାସନ ପ୍ରଥା ନିଜେ ଆଲୋଚନା କରି ସଭ୍ୟ ଦେଶ ଢଙ୍ଗରେ ନିଜ ରାଜ୍ୟକୁ ଗୋଟିଏ ଆଦର୍ଶ ରାଜ୍ୟ କରି ଗଢ଼ିବେ । ଏହି ଇଚ୍ଛାରେ ସେ ପୃଥିବୀ ଭ୍ରମଣରେ ବାହାରିଲେ ।

୧୯୧୦ ମସିହା ମେ ମାସ ୮ ତାରିଖରେ ଏହି ଯାତ୍ରା ଆରମ୍ଭ ହେଲା । ପ୍ରଥମେ ସେ ଚୀନ ଦେଶରେ ଯାଇ ପହଞ୍ଚିଲେ । ସେଠାର କେତେ ବଡ଼ ଲୋକଙ୍କ ପରିଚୟ ଲାଭ କରି ଜାପାନ ଗଲେ । ଜାପାନ ସମ୍ରାଟଙ୍କ ସହିତ ତାଙ୍କର ଦେଖା ସାକ୍ଷାତ ହେଲା । ଜାପାନର ଶିକ୍ଷା ସଭ୍ୟତା ଏବଂ ସେ ଦେଶର ପ୍ରକୃତି ଶୋଭାରେ ସେ ଏତେ ମୁଗ୍ଧ ହୋଇଯାଇଥିଲେ ଯେ, ପରଜନ୍ମରେ ସେ ଜାପାନ ଦେଶରେ ଜନ୍ମ ହେବା ପାଇଁ କଥା ଛଳରେ କହି ପକାଇଥିଲେ ।

ଜାପାନଠାରୁ ଆମେରିକା ଯାତ୍ରା ହେଲା । ଜଗତର ବିଖ୍ୟାତ ନାଏଗ୍ରା ପ୍ରପାତ ଦେଖି, ନାନା ବିଚିତ୍ର ସ୍ଥାନ ଭ୍ରମଣ କରି ସେ ଯୁକ୍ତରାଜ୍ୟର ପ୍ରଧାନ ସହର ନିଉୟର୍କ ସହରକୁ ଗଲେ । ସେଠାରେ ଜଣେ ବନ୍ଧୁଙ୍କ ଘରେ କିଛି ଦିନ କଟାଇ ଇଂଲଣ୍ଡ ଆସିଲେ । ଆମେରିକାର ଗୌରବମୟ ବିଭବ ଦେଖି ସେହି ଆଦର୍ଶରେ ସେ ନିଜ ରାଜ୍ୟକୁ ଗଢ଼ିବା ପାଇଁ କାମନା କରିଥିଲେ ।

ଇଂଲଣ୍ଡରେ ଥିଲାବେଳେ ତାଙ୍କ ଦେହ ଖରାପ ହେଲା । କିଛି ଦିନ ତାଙ୍କୁ ସେଠାରେ ଡାକ୍ତରଙ୍କ ଚିକିତ୍ସାରେ ରହିବାକୁ ପଡ଼ିଲା । ସେହିଠାରେ ସେ ଭାରତର କେତେ ବଡ଼ ଲୋକ ଏବଂ ଭାରତମନ୍ତ୍ରୀ ଓ ପାର୍ଲିଆମେଣ୍ଟର ଅନେକ ସଭ୍ୟଙ୍କ ସହିତ ପରିଚିତ ହେଲେ । ନିଜେ ସମ୍ରାଟଙ୍କ ସହିତ ତାଙ୍କର ଆଳାପ ହୋଇଥିଲା ।

ଏହିପରି ଭାବରେ ଚୀନ, ଜାପାନ, ଆମେରିକା, ଇଂଲଣ୍ଡ ବୁଲି ମହାରାଜା ଯେତେବେଳେ ଆସି ନିଜ ରାଜ୍ୟରେ ପହଞ୍ଚିଲେ, ଇଂରେଜ ସରକାର ତାଙ୍କର ଗୁଣରେ ଏବଂ ଶାସନ ବ୍ୟବସ୍ଥାରେ ସନ୍ତୁଷ୍ଟ ହୋଇ ତାଙ୍କୁ ପୁରୁଷାନୁକ୍ରମେ ମହାରାଜା ଉପାଧି ଦେଇ ବହୁ ସମ୍ମାନ ଦେଖାଇଥିଲେ ।

୧୯୧୦ ମସିହା ଡିସେମ୍ବର ମାସ ୧୨ ତାରିଖରେ ଦିଲ୍ଲୀରେ ଭାରତ ସମ୍ରାଟଙ୍କର ଦରବାର ହେଲା । ସେତେବେଳେ ମହାରାଜା ଶ୍ରୀରାମଚନ୍ଦ୍ର ଯୋଗ ଦେଇଥିଲେ । ସମ୍ରାଟ୍ କଲିକତା ଆସିଲାବେଳେ ସେ ନିଜ ରାଜ୍ୟର ଓଡ଼ିଆ ପାଇକମାନଙ୍କର ବିଖ୍ୟାତ ଛଉନାଚ ଦେଖାଇବାର ବନ୍ଦୋବସ୍ତ କରିଥିଲେ । ସେ ନାଚ ଦେଖି ସମସ୍ତେ ଖୁସି ହୋଇଥିଲେ ।

## ପ୍ରଜାରଞ୍ଜକ ଶ୍ରୀରାମଚନ୍ଦ୍ର

ମହାରାଜା ଶ୍ରୀରାମଚନ୍ଦ୍ର ଓଡ଼ିଶାର ଜଣେ ଆଦର୍ଶ ରାଜା ଥିଲେ । ଜଙ୍ଗଲମୟ ମୟୂରଭଞ୍ଜ ରାଜ୍ୟକୁ ସେ ଯେପରି ଭାବରେ ନୂଆ କରି ଗଢ଼ିଥିଲେ ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ତାଙ୍କ ଅମଳରେ ରାଜ୍ୟର ସକଳ ଦିଗରେ ଉନ୍ନତିର ସୁଅ ବହିଲା ।

ସୂର୍ଯ୍ୟ ଉଦୟ ହେଲେ ଯେପରି ଜଗତ ହସିଉଠେ, ଶ୍ରୀରାମଚନ୍ଦ୍ର ସିଂହାସନରେ ବସିବା ଦିନରୁ ରାଜ୍ୟର ସୁଖଶ୍ରୀ ସେହିପରି ଫୁଟି ଉଠିଲା । ମହାରାଜା କୃଷ୍ଣଚନ୍ଦ୍ରଙ୍କ ଅମଳରେ ସମଗ୍ର ରାଜ୍ୟରୁ ପ୍ରାୟ ଚାରିଲକ୍ଷ ଟଙ୍କା କର ଆଦାୟ ହେଉଥିଲା । ମାତ୍ର ଶ୍ରୀରାମଚନ୍ଦ୍ର ଗାଦିରେ ବସି ଏପରି ଶାସନ ଚଳାଇ ଦେଲେ ଯେ, କେତେବର୍ଷ ମଧ୍ୟରେ ରାଜସ୍ୱର ପରିମାଣ ୧୪ ଲକ୍ଷ ଟଙ୍କା ଯାଏଁ ଉଠିଗଲା । ଅଥଚ ପ୍ରଜାମାନଙ୍କୁ ଏଥିପାଇଁ ଭାବିବାକୁ ପଡ଼

ନଥିଲା । ଏହି ଆଦାୟ ସଙ୍ଗେ ସଙ୍ଗେ ପ୍ରଜାଙ୍କ ମଙ୍ଗଳ ପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ମଧ୍ୟ ହୋଇଥିଲା ।

ମୟୂରଭଞ୍ଜ ପ୍ରକୃତି-ରାଣୀଙ୍କ ଅସରନ୍ତି ଭଣ୍ଡାର କହିଲେ ଚଳେ । ବଣ ଜଙ୍ଗଲ ପାହାଡ଼ ଭିତରେ କେତେ ଅମୂଲ୍ୟ ଜିନିଷ ରହିଛି, ଏ ପର୍ଯ୍ୟନ୍ତ ତାହା କଳନା କରି ହୋଇପାରି ନଥିଲା । ଶ୍ରୀରାମଚନ୍ଦ୍ର ସେହି ସବୁ ସମ୍ପଦକୁ ବାହାରକୁ ପ୍ରକାଶ କରିଦେଲେ । ଆଗେ ଜଙ୍ଗଲ ବିଭାଗରୁ ତିରିଶି ହଜାର ଟଙ୍କା ଆଦାୟ ହେଉ-ଥିଲା । ଶ୍ରୀରାମଚନ୍ଦ୍ର କେତେକ ଆଇନ କଟକଣା ଉଠାଇ ଏପରି ଭାବରେ ଜଙ୍ଗଲ ବିଭାଗକୁ ଗଢ଼ି ଦେଲେ ଯେ, ଆଦାୟ ପରିମାଣ ପ୍ରାୟ ଅଢ଼େଇ ଲକ୍ଷ ଟଙ୍କା ହୋଇଗଲା ।

ମୟୂରଭଞ୍ଜରୁ ସୁନା ମିଳେ । ପର୍ବତ ଭିତରେ ଲୁହାର ଖଣି ମଧ୍ୟ ଅଛି । ଏ ସବୁର ବ୍ୟବସାୟ ଚଳିଲା । ବୈଜ୍ଞାନିକ ଉପାୟରେ ଲୁହା ଆମଦାନି ହେଲା । ୧୯୦୬ ମସିହାଠାରୁ ଟାଟା କମ୍ପାନୀ ପଟା ନେଇ ଗୋରୁମହିଷାଣି ଓ ସୁଲେଇପାଟ ପର୍ବତରୁ ଲୁହା ଆମଦାନି କରୁଛନ୍ତି ।

ରାଜ୍ୟର କୃଷି ଉପରେ ମହାରାଜାଙ୍କର ଭାରି ନଜର ଥିଲା । ଆଗେ ଯାହା ଚାଷ ଜମି ଥିଲା ତାହା କେବଳ ବର୍ଷାପାଣି ଉପରେ ନିର୍ଭର କରୁଥିଲା । ସବୁବେଳେ ଫସଲ ଆମଦାନିର ସୁବିଧା ନ ଥିଲା । ଏହି ଅଭାବ ଦୂର କରିବା ପାଇଁ ସେ ରାଜକୋଷରୁ ୬ ଲକ୍ଷ ଟଙ୍କା ବ୍ୟୟ କରି ହଳଡିହ ଓ ହଳଦିଆ ନାମକ ଦୁଇ ସ୍ଥାନରେ ଦୁଇଟି ଜଳଭଣ୍ଡାର ଖୋଲିଲେ । ତାଙ୍କର ଇଚ୍ଛା ଥିଲା, ବୁଢ଼ାବଳଙ୍ଗ ନଦୀର ସବୁ ପାଣିକୁ ଉପରମୁଣ୍ଡରେ ଅଟକାଇ ରାଜ୍ୟ ତମାମ ଚାଷବାସର ସୁବିଧା କରାଇ ଦେବେ । ଏହାଛଡ଼ା ଶିମିଳିପାଳ ପର୍ବତରେ ବୁଢ଼ାବଳଙ୍ଗ ନଦୀର ଯେଉଁ

ଜଳପ୍ରପାତ ଅଛି, ସେଥିରୁ ବିଦ୍ୟୁତ୍ ବାହାର କରିବେ—ଏହି ସବୁ କଳ୍ପନା କେବଳ କଳ୍ପନାରେହିଁ ରହିଲା ।

ରୂପ୍‌ସା ଷ୍ଟେସନଠାରୁ ରାଜଧାନୀ ବାରିପଦା ଯାଏ ରାଜ୍ୟରେ ଯେଉଁ ରେଳଲାଇନ ପଡ଼ିଛି ତାହା ଶ୍ରୀରାମଚନ୍ଦ୍ରଙ୍କ କୀର୍ତ୍ତି । ଏଥିପାଇଁ ସେ ପ୍ରାୟ ଛଅ ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ । ଯେତେବେଳେ ଏହି କୀର୍ତ୍ତିର ଶୁଭ ଦିଆ ହେଲା, ସେ ସମୟର ଗ୍ରେଟ୍‌ଲାଟ ସାହେବ ବାରିପଦାକୁ ଆସିଥିଲେ ।

ରାଜ୍ୟର ବେପାର ବଣିଜ ସୁବିଧା ପାଇଁ ମହାରାଜା ରାଜ୍ୟ ଭିତରେ ଅଳ୍ପ କେତେ ବର୍ଷ ମଧ୍ୟରେ ପାଞ୍ଚଶହ ଦୁଇ ମାଇଲ ରାସ୍ତା ତିଆରି କରାଇ ଦେଲେ । ଏଥିରେ ରାଜ୍ୟର ଶାସନ କାର୍ଯ୍ୟରେ ମଧ୍ୟ ବଡ଼ ସୁବିଧା ହେଲା ।

ରାଜ୍ୟରେ ନୂଆ ଶିକ୍ଷା ବିଭାଗ ଖୋଲିଲା । ବାରିପଦାର ମାଇନର ସ୍କୁଲଟି ହାଇସ୍କୁଲରେ ପରିଣତ ହେଲା । ଏଥିପାଇଁ ବହୁତ ଟଙ୍କା ଖର୍ଚ୍ଚ କରାଗଲା । କେତେ ସ୍ଥାନରେ ନୂଆ ପ୍ରାଇମେରୀ ସ୍କୁଲ ବସିଲା । ତାଙ୍କ ପୂର୍ବରୁ ଏଡ଼େ ବଡ଼ ରାଜ୍ୟଟାରେ ମୋଟେ ୪୪ ଗୋଟି ପ୍ରାଇମେରୀ ସ୍କୁଲ ଥିଲା । ମାତ୍ର ସେ ରାଜଦଣ୍ଡ ଧରିବାର ୧୮ ବର୍ଷ ମଧ୍ୟରେ ସ୍କୁଲ ସଂଖ୍ୟା ଏଥିର ଦଶଗୁଣ ବଢ଼ିଗଲା । ସବୁ ସ୍କୁଲ ପାଇଁ ନୂଆ ନୂଆ ଘର ତିଆରି ହେଲା । ଏହି ସବୁ ସୁବିଧା ଯୋଗୁଁ ପ୍ରଜାଙ୍କର ଦିନକୁ ଦିନ ଶିକ୍ଷା ପ୍ରତି ଆଗ୍ରହ ମଧ୍ୟ ବଢ଼ିଲା । ଛାତ୍ରସଂଖ୍ୟା ବହୁତ ବଢ଼ିଲା ।

କେବଳ କୃଷିଦ୍ୱାରା ଗରିବ ପ୍ରଜାଙ୍କର ଦୁଃଖ ମୋଚନ ହେବ ଭାବି, ସେ ପ୍ରଜାଙ୍କୁ ନାନାପ୍ରକାର କୃଷି ପାଇଁ ଉତ୍ସାହ ଦେଉଥିଲେ । ନାନା ପ୍ରକାର ଫସଲର ମଞ୍ଜି ଅଣାଇ ଲୋକଙ୍କ

ମଧ୍ୟରେ ବଣ୍ଟାଯାଉଥିଲେ ଏବଂ ଆଦର୍ଶ ଫସଲ କରାଇ ମଧ୍ୟ ଦେଖାଉ ଥିଲେ । ରାଜ୍ୟର ଜଙ୍ଗଲରେ ରବର ଆମଦାନି ପାଇଁ ରବର ଗଛ ଆଣି ଲଗାଇଲେ, କଦାଚିଷ ବିଷୟରେ ନାନା-ପ୍ରକାର ସୁବ୍ୟବସ୍ଥା କରାଇଲେ । ଗରିବ ଲୋକେ କାଳେ ଏ ସବୁ ଚାଷ କରିବାକୁ ସମର୍ଥ ହୋଇ ପାରିବେ ନାହିଁ, ଏଥିଲାଗି ସେ ହଳ ବଳଦ ଏବଂ ମଞ୍ଜି କିଣିବାକୁ ଅଳ୍ପ ସୁଧରେ ଋଣ ଦେବା ସୁବିଧା କରାଇ ଦେଇଥିଲେ ।

ମୟୂରଭଞ୍ଜ ଜଙ୍ଗଲରେ ଆଉ ଏକ ଲାଭଜନକ ବ୍ୟବସାୟ ଖୋଲିଲା । ତାହା ହେଉଛି ଲାଖ ଫସଲ । ଏଥିରୁ ବହୁତ ଟଙ୍କା ଆଦାୟ ହୁଏ । ଏହାଛଡ଼ା କାଠ, ପଥର, ମଠା, ଟସର ଶିଳ୍ପ ବିଷୟରେ ମହାରାଜାଙ୍କର ଦୃଷ୍ଟି ପଡ଼ିଲା । ପ୍ରଜାଙ୍କୁ ଅର୍ଥ ସାହାଯ୍ୟ ଦେଇ, ଉତ୍ସାହ ଦେଇ, ବହୁତ ଟଙ୍କା ଖର୍ଚ୍ଚ କରି କାରଖାନା ଗଢ଼ି ଏ ସବୁ ଦିଗରେ ସେ ଲାଗି ପଡ଼ିଲେ ।

ଏ ସବୁ ବାହାରେ ରାଜ୍ୟର ଶାସନ ସୁବିଧା ପାଇଁ ଡାକ ବଙ୍ଗଳା, ନୂଆ ନୂଆ କଚେରୀ ଘର ତୋଳା ଆରମ୍ଭ ହେଲା । ରାଜଧାନୀ ବାରିପଦାର ସୁନାମ ଦିନକୁ ଦିନ ବଢ଼ିଲା । ଜେଲଖାନାର ସଂସ୍କାର ହେଲା । ଗୋଟିଏ ସାଧାରଣ ପୁସ୍ତକାଳୟ ସ୍ଥାପିତ ହେଲା । ରାଜ୍ୟର ନାନା ସ୍ଥାନରେ ଛଅ ଗୋଟି ନୂଆ ଡାକ୍ତରଖାନା ପ୍ରତିଷ୍ଠା କରାଗଲା । ଏହି ସବୁ ଦେଶହିତକର କାର୍ଯ୍ୟ ଲାଗି ଅକାତରରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ଦିଆ ହେଉଥିଲା । ଏଥିରେ ମହାରାଜା ଶ୍ରୀରାମଚନ୍ଦ୍ର ପରମ ସନ୍ତୋଷ ଲାଭ କରୁଥିଲେ ।

ମହାରାଜା ଶ୍ରୀରାମଚନ୍ଦ୍ର ପ୍ରଜାଙ୍କ ମଙ୍ଗଳ ପାଇଁ ଏତେ ବ୍ୟସ୍ତ ହେଉଥିଲେ ଯେ, କେବଳ ସେଥିପାଇଁ ଆଗରୁ କେତେ

ଗୁଡ଼ିଏ ଧରାବନ୍ଧା ନିୟମକୁ ସମ୍ପୂର୍ଣ୍ଣ ବଦଳାଇ ଦେଇଥିଲେ । ଆଗେ ନିଜ ନିଜ ଜମି ଉପରେ ପ୍ରଜାଙ୍କର ସ୍ୱତ୍ତ୍ୱ ଅଧିକାର କିଛି ନଥିଲା କହିଲେ ଚଳେ । ରାଜା ଚାହିଁଲେ ସେମାନେ ଜମିରୁ ବେଦଖଲ ହୋଇ ପାରୁଥିଲେ; ତାହା ଅନ୍ୟ ଖରିଦ ବିକି କରି ପାରୁ ନଥିଲେ । ଏହା ଛଡ଼ା ଜମି ବନ୍ଦୋବସ୍ତରେ ନାନା ଦୋଷ ଥିଲା । ଖଜଣା ଆଦାୟ କରିବା ଆଇନରେ ନାନା ଗଳଦ ରହିଥିଲା । ଉପଯୁକ୍ତ ଭାବରେ ଜମି ଉପରେ ଖଜଣା ଧାର୍ଯ୍ୟ କରାଯାଇ ନଥିଲା । ବଡ଼ ବଡ଼ ମହାଜନ ସବୁ ସାଧାରଣ ପ୍ରଜାଙ୍କୁ ଟଙ୍କା କରଜ ଦେଲେ ଯମ ପରି ତାଙ୍କ ସଙ୍ଗେ ଲାଗି ଚକ୍ରବୃଦ୍ଧି ସୁଧହାରରେ ସର୍ବସ୍ୱାନ୍ତ କରି ଦେଉଥିଲେ । ଏଥିର ହାଜରୁହାରି କିଏ ବୁଝୁ ନଥିଲେ । ମହାଜନୀ ଟଙ୍କା କାରବାର ଅନ୍ଧାଧୂନ୍ଦା ଚାଲିଥିଲା । ମହାଜନ ହାତ ଦରିଦ୍ର ପ୍ରଜାର ରକ୍ତ ଶୋଷା ହେଉଥିଲା ।

ମହାରାଜାଙ୍କ ଦୟାର ହୃଦୟ ଏ ସବୁ କଥା ଦେଖି ଥୟ ହେଲା ନାହିଁ । ସେ ପୁରୁଣା ଆଇନ ବଦଳାଇ ପ୍ରଜାମାନଙ୍କୁ ଜମି ଉପରେ ପୂରା ଦଖଲ ସ୍ୱତ୍ତ୍ୱ ଦେଇଦେଲେ । ନୂଆ ଭାବରେ ନୂଆ ନିୟମରେ ବନ୍ଦୋବସ୍ତ ଆରମ୍ଭ ହେଲା । ଉଚିତ ହାରରେ ବାର୍ଷିକ ଖଜଣା ବସିଲା । ପ୍ରଜାମାନେ ବହୁତ ଅନାବାଦୀ ଜମି ନେଇ ଚାଷବାସ କରି ଆନନ୍ଦରେ ରହିଲେ । ମହାଜନମାନେ ଯେପରି ପ୍ରଜାଙ୍କୁ ଶୋଷି ନପାରିବେ, ସେଥିପାଇଁ ନୂଆ ନିୟମ କରି ଅଳ୍ପ ସୁଧରେ ଟଙ୍କା କରଜ ଦେବା ବନ୍ଦୋବସ୍ତ କରାଗଲା ।

ଏହାର ଫଳରେ ପ୍ରଜାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଲୋକେ ପ୍ରକୃତରେ ରାମରାଜ୍ୟ ପାଇଲେ ବୋଲି କୃତକୃତ୍ୟ ହେଲେ । ମୟୂରଭଞ୍ଜର ସୁନାମ ଚାରିଆଡ଼େ ଶୁଣାଗଲା ।

# ଦେଶଭକ୍ତ ଶ୍ରୀରାମଚନ୍ଦ୍ର

କବି ଗାଇଛନ୍ତି—

"ଆଶାପ୍ର-ଉତ୍କଳ-ଆଶା କିଶୋର ପାଦପ
ଗୁଣାଗ୍ରାମ ରାମଚନ୍ଦ୍ର ଭଞ୍ଜ-କଞ୍ଜ-ରବି।"

ବାସ୍ତବିକ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଖାଲି ମୟୂରଭଞ୍ଜର ନୁହନ୍ତି, ସମଗ୍ର ଉତ୍କଳ ଦେଶର ବଡ଼ ଆଶା ଭରସାର ପାତ୍ର ଥିଲେ । ଦୁଃଖିନୀ ଉତ୍କଳ ଜନନୀଙ୍କର ଲୁହଧାର ପୋଛି ଦେବା ପାଇଁ, ଜନନୀ ଜନ୍ମଭୂମିର ପାଦପଦ୍ମ ପୂଜା କରିବା ପାଇଁ, ତାଙ୍କ ହୃଦୟ ସଦାବେଳେ ଅଧୀର ହେଉଥିଲା ।

ସେ ଯୁଗରେ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶାର ସୀମା ନଥିଲା । ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଓଡ଼ିଶାର ନାଁ ଶୁଣାଯାଉ ନଥିଲା । ଓଡ଼ିଆ ଜାତି କାନ୍ଦୁଥିଲା, ଓଡ଼ିଆ ଭାଷା ଦରିଦ୍ର ହୋଇ ପଡ଼ିଥିଲା । ଓଡ଼ିଶାର ରାଜାମହାରାଜାମାନେ ଆଗଭର ହୋଇ ଜନ୍ମଭୂମି ପ୍ରତି ସେମାନଙ୍କ କର୍ତ୍ତବ୍ୟ ପୂରଣ କରିବାରେ ପାରୁ ନଥିଲେ । ଏସବୁ ଅଭାବ ଦେଖି ଶ୍ରୀରାମଚନ୍ଦ୍ରଙ୍କ ପ୍ରାଣରେ ଶାନ୍ତି ଆସୁ ନଥିଲା । ମୟୂରଭଞ୍ଜର ଉନ୍ନତି ସଙ୍ଗେ ସଙ୍ଗେ ସମଗ୍ର ଉତ୍କଳର ସେ ଉନ୍ନତି ଆଶା କରୁଥିଲେ ।

ସେହି ସମୟରେ ଓଡ଼ିଶାର କୁଳବୃଦ୍ଧ ମଧୁବାବୁ ଦରମରା ଜାତି ହୃଦୟରେ ଜୀବନ ଦେବା କାମନାରେ ଉତ୍କଳ ସମ୍ମିଳନୀ ଆରମ୍ଭ କଲେ । ଇଂରେଜ ସରକାରଙ୍କ ଅମଳରେ ଓଡ଼ିଶା ଖଣ୍ଡ ଖଣ୍ଡ ହୋଇ ରହିଛି, ଓଡ଼ିଆ ଜାତି ନାନାଜାତିର ପ୍ରଭାବରେ ପଡ଼ି ନିଜର ମାତୃଭାଷା ଭୁଲି କ୍ରମେ ଲୋପ ହୋଇ ଆସୁଛି, ଜାତିର ଏହି ଦୁର୍ଦ୍ଦଶା ବେଳେ କେଉଁ ଦେଶଭକ୍ତର ହୃଦୟ ସ୍ଥିର ହେବ ?

ମଧୁବାବୁ ସମ୍ମିଳନୀକୁ ଗଢ଼ିବାରେ ଲାଗିଲେ । ଗୃହଆଡ଼େ ଦେଶ-ମାତାଙ୍କ ଡାକରା ପଠାହେଲା; ଜନ୍ମଭୂମି ପାଇଁ ଲାଗିପଡିବାକୁ ଲୋକଙ୍କ ଭିତରେ ଚହଳ ପଡ଼ିଲା । ଆନ୍ଦୋଳନର ଏହି ଆରମ୍ଭ ସମୟରେ ମହାରାଜା ଶ୍ରୀରାମଚନ୍ଦ୍ର ଶତଗୁଣ ଉତ୍ସାହରେ ଜନନୀ ଜନ୍ମଭୂମିର ଚରଣସେବା ପାଇଁ ଲାଗିଥିଲେ ।

୧୮୦୩ ମସିହାରେ ଇଂରେଜ ସରକାର ଓଡ଼ିଶା ଅଧିକାର କଲେ । ଠିକ୍ ଚାରି ଶହେ ବର୍ଷ ପରେ ଖଣ୍ଡ ବିଖଣ୍ଡିତ ଓଡ଼ିଶାକୁ ଏକାଠି କରିବାପାଇଁ ୧୯୦୩ ମସିହା ଡିସେମ୍ବର ମାସ ୩୦ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ବସିଲା । ମୟୂରଭଞ୍ଜର ମୁକୁଟମଣି, ଉତ୍କଳ ଜନନୀଙ୍କର ଆଶା ଭରସାର ପାତ୍ର ମହାରାଜା ଶ୍ରୀରାମଚନ୍ଦ୍ର ଏହି ସମ୍ମିଳନୀର ସଭାପତି ହେଲେ ।

ମହାରାଜା ଶ୍ରୀରାମଚନ୍ଦ୍ର ମାତୃଭୂମି ଓଡ଼ିଶାକୁ କିପରି ପ୍ରାଣର ସହିତ ଭଲ ପାଉଥିଲେ, ତାଙ୍କର ସେହି ସମୟର ବକ୍ତୃତାରୁ ବେଶ୍ ଜଣା ପଡ଼େ । ସେ କହିଥିଲେ—

‘ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ’

“ନିଜର ଜନନୀ ଓ ଜନ୍ମଭୂମି ଏ ଦୁହେଁ ସ୍ୱର୍ଗ ଅପେକ୍ଷା ବଡ଼ ଅଟନ୍ତି । ଆମ୍ଭମାନଙ୍କ ମାତୃଭୂମି ଉତ୍କଳ ଦେଶ ନିଜର ଅଭାବ ମୋଚନାର୍ଥ ଆମ୍ଭମାନଙ୍କ ସମୀପରେ ଉପସ୍ଥିତ ହୋଇଛନ୍ତି । ତାହାଙ୍କର ଡାକ ନ ଶୁଣି ଆମ୍ଭେମାନେ କି ନିଶ୍ଚିନ୍ତ ହୋଇ ରହିପାରୁ ? ଯେ ପର୍ଯ୍ୟନ୍ତ ତାଙ୍କର ଅଭାବ ମୋଚନ ନ ହୋଇଛି, ସେ ପର୍ଯ୍ୟନ୍ତ ଆମ୍ଭେମାନେ କଦାପି ସ୍ଥିରହୋଇ ରହି ନପାରୁଁ । ଆମ୍ଭମାନଙ୍କ ଜନ୍ମଭୂମି ଉତ୍କଳ ଦେଶର ଅଭାବ ମୋଚନ ନିଜର

କି ଆମ୍ଭେମାନେ ତାହାର ଯୋଗ୍ୟ ସନ୍ତାନ ବୋଲି ଆପଣାକୁ ଆପେ ମନ ମଧ୍ୟରେ ବୋଧ କରି ପାରିବା ?

× × × ×

"ସ୍ୱଦେଶ ପ୍ରତି ଯେପରି ସ୍ନେହ, ସେହିପରି ମାତୃଭାଷା ପ୍ରତି ସ୍ନେହ କରିବା ଦରକାର । ଉତ୍କଳ ଭାଷାର ଯେତେଦୂର ଉନ୍ନତି ହେବା ଉଚିତ, ଯଦିଚ ତେତେଦୂର ଉନ୍ନତି ହୋଇନାହିଁ; ତଥାପି ଉତ୍କଳର ସାହିତ୍ୟ ଆକାଶରେ ଉଜ୍ଜ୍ୱଳ ତାରାର ଅଭାବ ନାହିଁ ।

"ଉତ୍କଳ ଦେଶର ଇତିହାସରେ ଏପରି ଗୋଟିଏ ସଭା ଅଭିନବ ବ୍ୟାପାର । ଏ ସଭାରେ ଆପଣମାନଙ୍କୁ ସାକ୍ଷାତ କରି ମୋର ଅନିର୍ବଚନୀୟ ଆନନ୍ଦ ଜାତ ହୋଇଅଛି ଓ ଏହି ଦେଶ-ହିତକର କାର୍ଯ୍ୟରେ ଆପଣମାନଙ୍କ ସହିତ ଭାଗୀ ହୋଇଥିବାରୁ ମୁଁ ନିଜକୁ କୃତକାର୍ଯ୍ୟ ମନେ କରୁଅଛି ।"

ଏହିଥିରୁ ଶ୍ରୀରାମଚନ୍ଦ୍ରଙ୍କ ସ୍ୱଦେଶ-ପ୍ରୀତି ଫୁଟି ଉଠୁଛି । ଓଡ଼ିଶାର ଅନ୍ଧକାରମୟ ଯୁଗରେ ଜାତିପ୍ରାଣରେ ଆଶାର ଦୀପ ଜାଳିବା ପାଇଁ, ଜାତିକୁ ନୂଆ ଭାବରେ ନୂଆ ବାଟରେ ଚଳାଇବା ପାଇଁ ସେ ଉଦ୍ୟମ ଆରମ୍ଭ କରୁଥିଲେ । ତାଙ୍କର ସେ ଆଶା ପୂର୍ଣ୍ଣ ହେବା ପୂର୍ବରୁ ଆଶାଦୀପ ଲିଭିଗଲା । ଉତ୍କଳ ଜନନୀଙ୍କ ଲୁହ ସେ ପୋଛି ପାରିଲେ ନାହିଁ ।

ଧନ ସମ୍ପଦ ଭିତରେ ବଢ଼ି, ରାଜସିଂହାସନରେ ବସି, ଶ୍ରୀରାମଚନ୍ଦ୍ର କେବେହେଲେ ନିଜକୁ ଦେଶବାସୀଙ୍କଠାରୁ ଅଲଗା ବୋଲି ମନେ କରୁ ନଥିଲେ । ସେ କହୁଥିଲେ, "ଆମ୍ଭେମାନେ ହିନ୍ଦୁ ହେଉ, ଅଥବା ମୁସଲମାନ ହେଉ, କି ଖ୍ରୀଷ୍ଟିୟାନ, କି ବୌଦ୍ଧ ବା ଅପର ଧର୍ମ୍ମାବଲମ୍ବୀ ହେଉ, ସମସ୍ତେ ଏକ ପରମେଶ୍ୱରଙ୍କ ସନ୍ତାନ ।"

## ଲୋକପ୍ରିୟ ଶ୍ରୀରାମଚନ୍ଦ୍ର

ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଜୀବନ କଥା ଏ ଗ୍ରୋଟିଏ ବହିଟିରେ କହିବା ସହଜ ନୁହେ । ମୋଟାମୋଟି କହିବାକୁ ଗଲେ କେବଳ ମୟୂରଭଞ୍ଜ ରାଜ୍ୟର ସେ ରାଜା ଥିଲେ ସତ; ମାତ୍ର ଗୁଣରେ ସମଗ୍ର ଓଡ଼ିଆଜାତିର ହୃଦୟର ରାଜା ହୋଇପାରିଥିଲେ । ତାଙ୍କ ପରି ବୀର, ସାଧୁ, ପଣ୍ଡିତ, ଦେଶଭକ୍ତ ନରପତି ସେତେବେଳେ ଓଡ଼ିଶା ମଣ୍ଡଳରେ କେହି ନଥିଲେ କହିଲେ ଚଳେ । ରାଜକୁଳରେ ଜନ୍ମ ହୋଇ ସେ ବଡ଼ ସରଳ ଥିଲେ, ପଣ୍ଡିତ ଲୋକ ହୋଇ ସେ ବଡ଼ ନମ୍ର ଥିଲେ; ବୀର ହୋଇ ଗର୍ବ କରୁ ନଥିଲେ, ସମ୍ମାନ ପାଇ ନିଜକୁ ବଡ଼ ବୋଲି ମନେ କରୁ ନଥିଲେ । ତାଙ୍କ ଜୀବନର କେତେଗୁଡ଼ିଏ ମଧୁମୟ କଥା ଅଛି; ସେ ସବୁ ଶୁଣିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ।

ଦଣ୍ଡିବା ଶକ୍ତି ଥାଇ ମଧ୍ୟ ସେ ଦୋଷ ଦେଖି ଏପରି କ୍ଷମା ଦେଉଥିଲେ ଯେ, ସେଥିରେ ଦୋଷୀର ହୃଦୟ ତରଳି ଯାଉଥିଲା । ଭୋଗ ବିଳାସ ଛାଡ଼ି ସେ ଏପରି ଚଳୁଥିଲେ ଯେ, ଲୋକେ ତାଙ୍କୁ ଦେବତା ପରି ଭକ୍ତି କରୁଥିଲେ । ଥରେ ସେ ହାବଡ଼ା ଷ୍ଟେସନ ଠାରେ ନିତାନ୍ତ ସାଧାରଣ ବେଶରେ ଟିକଟ ଖଣ୍ଡିଏ କିଣିବେ ବୋଲି ଠିଆ ହୋଇଥିଲେ । ଜଣେ ପରିଚିତ ଭଦ୍ରଲୋକ ତାଙ୍କୁ ସେପରି ଅବସ୍ଥାରେ ଠିଆ ହେବାର ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ମହାରାଜ, ଏ କ'ଣ ? ଷ୍ଟେସନରେ କରିବାକୁ କଣ ନାହାନ୍ତି ଯେ ଆପଣ ଏପରି ନିଜେ ଟିକଟ କାଟିବାକୁ ଆସିଛନ୍ତି ?" ତାଙ୍କ କଥା ଶୁଣି ମହାରାଜା ହସି ଉଠିଲେ । କହିଲେ, "ରାଜକୁଳରେ ଜନ୍ମ ହୋଇଛି ବୋଲି ସିନା ରଜା ହୋଇଛି, ତା ନ ହୋଇଥିଲେ ତ ସାଧାରଣ ଲୋକ ପରି ହୋଇଥାନ୍ତି । ଏଥିରେ ଆଶ୍ଚର୍ଯ୍ୟ ହେବାର କଥା କିଛି ନାହିଁ ।"

ଏହିପରି ଅନେକ କଥା ଅଛି । ଚାକରବାକରଙ୍କ ଦୋଷ ଦେଖିଲେ ସେ ସେମାନଙ୍କୁ ସାବଧାନ କରାଇ ଦେଇ ବଡ଼ ଉଦାର ଭାବରେ କ୍ଷମା ଦେଉଥିଲେ । ନିଜର ସୁଖପାଇଁ ରାଜକୋଷରୁ ସେ ଅଧିକା କିଛି ଖର୍ଚ୍ଚ କରି ଦେଉନଥିଲେ । ଥରେ ସେ ରାଜଧାନୀ ଛାଡ଼ି ଆଉ ଠାଆକୁ ଯାଇଥିଲେ । ସଙ୍ଗରେ ପୂଜାରୀ ଥିଲା । ରୋଷେଇ ଜିନିଷ ଭିତରେ କେତେଗୁଡ଼ିଏ ଶୁଖିଲା ପନିପରିବା ଥିଲା । ସେ ସ୍ଥାନର କର୍ମଚାରୀ ଜଣକ ମହାରାଜାଙ୍କର ଏ ଜିନିଷ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସଙ୍ଗେ ସଙ୍ଗେ ସେ ଭଲ ଜିନିଷ ଆଣାଇ ପୂଜାରୀ ଦ୍ୱାରା ରୋଷେଇ ଆରମ୍ଭ କରାଇଲେ । ମହାରାଜା ଖାଇବସି ସେକଥା ଜାଣିପାରିଲେ । ଖାଉ ଖାଉ ହସି ହସି କହିଲେ, "ଏତେ କଷ୍ଟ ସହିଲେ କାହିଁକି ? ଆମର ତ ସବୁ ଜିନିଷ ଥିଲା ।" ନିଜ ସୁଖ ପାଇଁ ସେ ରାଜ୍ୟର ସମ୍ପତ୍ତି ବେଶୀ ଖର୍ଚ୍ଚ କରି ଦେଉ ନଥିଲେ ।

ଶ୍ରୀରାମଚନ୍ଦ୍ରଙ୍କ ଜୀବନର ଆଉ ଗୋଟିଏ ବଡ଼ ଗୁଣ ଯେ ସେ କାହା ଉପରେ କେବେ ହେଲେ ରାଗନ୍ତି ନାହିଁ । ନିଜକୁ ସେ ପ୍ରଜାଙ୍କ ଚାକର ମନେ କରି କାର୍ଯ୍ୟ କରୁଥିଲେ । ରାଜକାର୍ଯ୍ୟ ତୁଟି ଅବସର ବେଳେ ଆଇନ, ଦର୍ଶନ ପ୍ରଭୃତି ଶାସ୍ତ୍ର ପଢ଼ୁଥିଲେ । ତାଙ୍କର ଧର୍ମଭାବ ବଡ଼ ଉଦାର । ଜଗତର ସମସ୍ତ ପ୍ରାଣୀ ସମସ୍ତ ମନୁଷ୍ୟଙ୍କୁ ସେ ସମାନ ଚକ୍ଷୁରେ ଦେଖିବାକୁ ଶିଖିଥିଲେ । ସେ ଗୁଣୀକୁ ଯେପରି ଆଦର କରୁଥିଲେ, ନ୍ୟାୟ ପଥରେ ଦୋଷୀକୁ ସେହିପରି ଦଣ୍ଡ ଦେଉଥିଲେ । ତାଙ୍କର ଅନେକ କାର୍ଯ୍ୟରେ ସ୍ୱର୍ଗତ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ସଖା ଓ ପରାମର୍ଶଦାତା ଥିଲେ । କାର୍ଯ୍ୟ କଲାବେଳେ ସେ ନିଜର ସୁଖ, ଶାନ୍ତି, ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେଉ ନ ଥିଲେ । ଏଥିପାଇଁ ବେଳେ ବେଳେ ତାଙ୍କ

ଦେହ ଖରାପ ହେଉଥିଲା । ଏ ବିଷୟରେ ତାଙ୍କୁ କିଏ ପରାମର୍ଶ ଦେଲେ ସେ କହୁଥିଲେ, "କାର୍ଯ୍ୟ କରିବାକୁ ମନୁଷ୍ୟ ଜନ୍ମ ହୋଇଛି, ବସିବାକୁ ନୁହେ ।"

## ମୃତ୍ୟୁମୁଖେ ଶ୍ରୀରାମଚନ୍ଦ୍ର

ଆଗରୁ କୁହା ଯାଇଅଛି ଯେ ମୟୂରଭଞ୍ଜର ବଣ ଗିରି ପାହାଡ଼ ଭିତରେ ପ୍ରକୃତି ତାର କେତେ ଅଫୁରନ୍ତ ଭଣ୍ଡାର ସୃଷ୍ଟିର ଆଦିକାଳରୁ ସାଇତି ରଖିଛି । ସେ ଗୁଡ଼ିକର ସନ୍ଧାନ ଠିକରେଇ କାମରେ ଲଗାଇ ପାରିଲେ ଦେଶ ଯେ ଦିନେ ଧନଶାଳୀ ହୋଇ ଉଠିବ ଏବଂ ପ୍ରଜା-ସାଧାରଣଙ୍କ ଅଭାବ ଅସୁବିଧା ଘୁଞ୍ଚିବ--ଏ ବିଷୟରେ ମହାରାଜା ରାମଚନ୍ଦ୍ରଙ୍କର ତିଳେ ହେଲେ ସନ୍ଦେହ ନ ଥିଲା । ସେ ବିଦେଶରେ ବୁଲୁଥିଲାବେଳେ ନାନା ସ୍ଥାନରେ ନାନା ପ୍ରକାର କଳକାରଖାନା ଓ ଶିଳ୍ପ ଅନୁଷ୍ଠାନମାନ ଦେଖି ଏ କଥା ମନେମନେ ଠିକ୍ କରିଥିଲେ । ବିଦେଶରୁ ଫେରିଲାକ୍ଷଣି ନିଜ ରାଜ୍ୟର ବଣ ଜଙ୍ଗଲ ଉପରେ ତାଙ୍କର ନଜର ପଡ଼ିଲା । ଜଙ୍ଗଲ ଭିତରେ ପ୍ରକୃତି ତାର ଯେଉଁ ଧନସମ୍ପଦ ସଜାଡ଼ି ରଖିଛି, ସେଗୁଡ଼ିକୁ କାମରେ ଲଗାଇବା ପାଇଁ ତାଙ୍କର ମୁଣ୍ଡ ଖେଳିଲା । କିନ୍ତୁ ଜଙ୍ଗଲ ଭିତରେ ପଶି ଏ ସବୁର ସନ୍ଧାନ ଠିକ୍ କରିବା ସହଜ କଥା ନୁହେଁ । ପ୍ରଥମତଃ ଯିବା ଆସିବା ପାଇଁ ଜଙ୍ଗଲ ଭିତରେ ଭଲ ବାଟ ନ ଥାଏ; ସେଥିରେପୁଣି ବାଘ ଭାଲୁ ଆଦି ହିଂସ୍ରଜନ୍ତୁଙ୍କ ଭୟରେ ଦିନ ଦିପହରେ ମଧ୍ୟ ତା ଭିତରକୁ ଯିବାକୁ ଡର ଲାଗେ । ତେଣୁ ଜଙ୍ଗଲ ଭିତରକୁ ରେଲ ଲାଇନ ନେବାପାଇଁ ମହାରାଜା କଳ୍ପନା କଲେ । ଏହି ଉଦ୍ଦେଶ୍ୟରେ ସେ ୧୯୧୨ ମସିହା ଜାନୁଆରି ମାସରେ ବଙ୍ଗ ନାଗପୁର ରେଲ କମ୍ପାନିର କେତେଜଣ ପୁରୁଖା ପୁରୁଖା କର୍ମଚାରୀଙ୍କୁ ନିଜ ରାଜ୍ୟକୁ ଡକାଇ ପଠାଇଲେ ।

ମହାରାଜାଙ୍କ ନିମନ୍ତ୍ରଣ ପାଇ କେତେ ଜଣ ଇଞ୍ଜିନିଅର, କେତେ ସାଇବ ସୁବା ବାରିପଦାରେ ଆସି ପହଞ୍ଚିଲେ ।

ମହାରାଜା ସେମାନଙ୍କୁ ନେଇ ଶିକାରକୁ ବାହାରିଲେ । ମହାରାଜା ନିଜେ ଶିକାରୀ ବେଶ ଧରି ଗୋଟିଏ ମଞ୍ଚା ଉପରେ ବସିଲେ । ସାଙ୍ଗରେ ତାଙ୍କର ବିଶ୍ୱାସୀ ଚାକର ଜଣେ ମଧ୍ୟ ଥାଏ । ଅନ୍ୟାନ୍ୟ ସାହେବ ସୁବା ସବୁ ଗୋଟିଏ ଗୋଟିଏ ମଞ୍ଚାରେ ବନ୍ଧୁକ ଧରି ଜଗି ବସିଲେ ।

ହଠାତ୍ ହଠାତ୍ ଦିଓଟି ଭାଲୁ ଶିକାରୀମାନଙ୍କର ଆଖି ଆଗରେ ପଡ଼ିଲେ । ସାଙ୍ଗେ ସାଙ୍ଗେ ଗୁଳି ଫାଏର ହେଲା । ଦୁଇଟି ଭିତରୁ ଗୋଟିଏ ଭାଲୁ ସେଇଠି ମାଟି କାମୁଡ଼ି ଶୋଇଲା; ଆଉଟି ଘାଇଲା ହୋଇ ବଣଭିତରେ କୁଆଡ଼େ ପଳାଇଲା; ଶିକାରୀମାନେ କିନ୍ତୁ ମନେକଲେ ଯେ, ଭାଲୁଟି ଗୁଳି ଖାଇ ଗଛଲଟା ଉହାଡ଼ରେ କେଉଁ ଠାରେ ଲୁଚିଥିବ । ତେଣୁ କେହି ଆଉ ମଞ୍ଚାରୁ ଓହ୍ଲାଇଲେ ନାହିଁ । ସେଇଠି ସେମିତି ବସି ଭାଲୁ ଉପରେ କଡ଼ା ଆଖି ରଖିଲେ ।

ଏହି ସମୟରେ ମହାରାଜା କିନ୍ତୁ ମଞ୍ଚାରୁ ଓହ୍ଲାଇଲେ । ଯେଉଁ ବିଶ୍ୱାସୀ ଚାକର ଜଣକ ପାଖରେ ଥିଲା, ସେ କେତେ ମନାକଲା, କିନ୍ତୁ ମହାରାଜା ତାହା ନ ଶୁଣି ସମେ ତଳକୁ ଖସିଲେ । ଚାକରଟି ବାଧ୍ୟ ହୋଇ ତାଙ୍କୁ ଅନୁସରଣ କଲା । ସେତେବେଳେ ମହାରାଜା ଯେଉଁ ଶିକାରୀ ବେଶ ପିନ୍ଧିଥିଲେ, ତାହା କଳା; ଭାଲୁ ଦେହର ବର୍ଣ୍ଣ ସଙ୍ଗେ ସମାନ । ମଞ୍ଚା ଉପରେ ଯେଉଁ ଶିକାରୀମାନେ ଘାଇଲା ଭାଲୁ ଉଦ୍ଦେଶ୍ୟରେ ବସିଥିଲେ, ସେମାନେ ମହାରାଜାଙ୍କୁ ଭାଲୁ ବୋଲି ମନେକରି ଗୁଳି ଚଳାଇ ଦେଲେ ।

ଗୃକରର ଚିତ୍କାରରେ ଲୋକେ ଧାଇଁ ଆସିଲେ ଏବଂ ଯାହା ଦେଖିଲେ ସେଥିରେ ସେମାନଙ୍କ ତୁଣ୍ଡରୁ ବଚନ ବାହାରିଲା ନାହିଁ । ସମସ୍ତେ ମହାରାଜାଙ୍କୁ ଘେରିଗଲେ ଏବଂ ଡାକ୍ତର ଅଣାଇବା ପାଇଁ ତୁରନ୍ତ ଖବର ପଠାଇ ଦେଲେ ।

ବଡ଼ ଡାକ୍ତର ଆସିଲେ । ଗୃକରର ଆଘାତ ବଡ଼ ଗୁରୁତର ହୋଇଥିଲା । ସେ ସେହିଦିନ ମରିଗଲା । ବିଶ୍ୱାସୀ ଗୃକରର ମୃତ୍ୟୁରେ ରାମଚନ୍ଦ୍ରଙ୍କ ମନରେ ଦାରୁଣ ଆଘାତ ଲାଗିଲା । ଏହାପରେ ମହାରାଜା କ୍ରମେ ଆରୋଗ୍ୟ ହୋଇ ଆସିଲେ ।

ମାତ୍ର କିଛିଦିନ ପରେ ଦେଖାଗଲା ଯେ, ମହାରାଜାଙ୍କ ଦେହର ରକ୍ତ ଖରାପ ହୋଇ ଯାଇଛି । ତାଙ୍କ ଦେହ କ୍ରମେ ସୁସ୍ଥ ନ ହୋଇ ଦୁର୍ବଳ ହେବାକୁ ଲାଗିଲା, ରୋଗ ବୃଦ୍ଧି ବୃଦ୍ଧି ବଢ଼ି ଉଠିଲା । ଶେଷରେ ୧୯୧୨ ମସିହା ଫେବୃଆରି ମାସ ୧୨ ତାରିଖରେ ତାଙ୍କ ଜୀବନଦୀପ ଲିଭିଗଲା । ସେତେବେଳକୁ ତାଙ୍କର ବୟସ ମୋଟେ ୪୦ ବର୍ଷ ହୋଇଥିଲା ।

ଉତ୍କଳ ଆକାଶରୁ ଗୋଟିଏ ନକ୍ଷତ୍ର ଅକାଳରେ ଖସି ପଡ଼ିଲା ।

ଏବେ ସେହି ମୟୂରଭଞ୍ଜ ଅଛି ମାତ୍ର ତାହା ଆଉ ସ୍ୱତନ୍ତ୍ର ଗଡ଼ଜାତ ରାଜ୍ୟ ହୋଇ ନାହିଁ । ତାହା ଖାସ୍ ହୋଇ ଉତ୍କଳ ପ୍ରଦେଶରେ ମିଶି ବିଶାଳ ଉତ୍କଳ ଗଠନରେ ସାହାଯ୍ୟ କରିଛି । ମୟୂରଭଞ୍ଜ ବର୍ତ୍ତମାନ ଗୋଟିଏ ସ୍ୱତନ୍ତ୍ର ଜିଲା ।

---

ବ୍ରହ୍ମପୁର ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍‌ରେ ଶ୍ରୀ ହାଡ଼ୁ ରାୟଗୁରୁଙ୍କ ଦ୍ୱାରା ମୁଦ୍ରିତ । ୧୯୫୩ ।